
ପ୍ରମେୟ:
ପାର୍ଲେ ମୋନେକୋ ବିସ୍କୁଟ ପାଇବାପାଇଁ
ଆପଣଙ୍କୁ ଚକ୍ରାକାରରେ ବୁଲିବା ଆଦୌ
ଆବଶ୍ୟକ ନାହିଁ।
ପାର୍ଲେ ଗ୍ଳୁକୋ
ପାର୍ଲେ ମୋନେକୋ
ପାର୍ଲେ କ୍ରାକ୍‌ଜାକ୍

# ତଥ୍ୟ: କୁଡୁମୁଡୁ, ଘଷା ଏବଂ ପ୍ରଖ୍ୟାତ ପାର୍ଲେ ବିସ୍କୁଟଙ୍କର ଅନେକ ନକଲି ମଧ୍ୟ ଅଛନ୍ତି।

ସିଦ୍ଧ କରିବାକୁ ହବ ଯେ : ଦେଖିବାକୁ ପାର୍ଲେଙ୍କ ଭଳି ବିସ୍କୁଟ ତିଆରି କରି ପାରିବ ସିନା, କିନ୍ତୁ ସ୍ୱାଦରେ- କେବେ ହେଲେ ନୁହେଁ ।

ପ୍ରମାଣ : (କ) କିଣିବା ପରୀକ୍ଷା :

ପ୍ରଥମ କଥା ମନେରଖିବେ ଯେ, ପାର୍ଲେ ମୋନେକୋ ବିସ୍କୁଟ କେବେହେଁ ଖୋଲା ମିଳନ୍ତିନି । ଇସ୍ପେ ସର୍ବଦା ସ୍ୱଚ୍ଛଭାପୂର୍ବକ ବନ୍ଦ କରାହୋଇଥିବା ଗୋଲାକାର, ଚୌକୋଣିଆ କାଗଜ ପୁଡ଼ାରେ ଓ ଟିଣରେ ମିଳନ୍ତି । ଯଦ୍ୱାରା ତାଙ୍କର ନିଜସ୍ୱ ତାଜାପଣ ଅବସ୍ଖଳିତ ରହେ ।

(ଖ) ପ୍ୟାକେଟ ପରୀକ୍ଷା :

ଆକର୍ଷକ ପାର୍ଲେ ମୋନେକୋ ପ୍ୟାକ୍ ଯେ କୌଣସି ଥାକରେ ଥିଲେ ବି, ଅତି ସହଜରେ ଚିହ୍ନି ହୋଇଯିବ । ଦ୍ୱିବାର ସନ୍ଦେହମୁକ୍ତ ହେବା ପାଇଁ, ପ୍ୟାକ୍ ଉପରେ ଥିବା **P-A-R-L-E** ନାଁଆଟି ଠିକ ଭାବରେ ଦେଖନ୍ତୁ ।

(ଗ) ସ୍ୱାଦ ପରୀକ୍ଷା :

ଗୋଟେ ବିସ୍କୁଟ ଟିକିଏ ଚାଖିକରି ତ' ଦେଖନ୍ତୁ ! ଯଦି ବିସ୍କୁଟ ତବଷ୍ଟ ଏବଂ କୁଡୁକୁଡୁ ଲାଗୁଛି, ତେବେ ନିଃସନ୍ଦେହ ରହନ୍ତୁ, ଏହା ଅସଲ ପାର୍ଲେ ମୋନେକୋ ।

-ଫଳାଫଳ




## ଏମାନଙ୍କ ସମ୍ମିଶ୍ରଣରେ-ବିସ୍କୁଟର ସର୍ବୋତ୍ତମ ସ୍ୱାଦୋପଭୋଗ ।

everest/79/PP/453-Or

# ଜହ୍ନମାମୁଁ -କ୍ୟାମେଲ ରଙ୍ଗ ପ୍ରତିଯୋଗୀତା

## ପ୍ରବେଶିକା ଚାନ୍ଦା ବିହୀନ



ପୁରସ୍କାର ହାସଲ କରନ୍ତୁ ।

କ୍ୟାମେଲ – ୧ମ ପୁରସ୍କାର ଃ ୧୫

କ୍ୟାମେଲ – ୨ୟ ପୁରସ୍କାର ଃ ୧୦

କ୍ୟାମେଲ – ୩ୟ ପୁରସ୍କାର ଃ ୫

କ୍ୟାମେଲ – ୫ ଗୋଟି ସାନ୍ତ୍ୱନା ଦାୟକ ପୁରସ୍କାର

କ୍ୟାମେଲ – ୧୦ ଗୋଟି ପ୍ରମାଣ ପତ୍ର ।



ଏଥିରେ କେବଳ ୧୨ ବର୍ଷ ବୟସ ପର୍ଯ୍ୟନ୍ତ ଛାତ୍ରମାନେ ଅଂଶ ଗ୍ରହଣ କରିପାରିବେ । ପୂର୍ବରେ ଥିବା ଛବିକୁ ଯେ କୌଣସି କ୍ୟାମେଲ ରଙ୍ଗରେ ରଙ୍ଗୀନ କରନ୍ତୁ । ଆପଣଙ୍କର ରଙ୍ଗୀନ ଚିତ୍ରକୁ ନିମ୍ନ ଠିକଣାରେ ପଠେଇ ଦିଅନ୍ତୁ । P.B. No. 9928, COLABA, Bombay-400 005.

ଏହାରି ଫଳାଫଳ ଚୂଡ଼ାନ୍ତ ଏବଂ ଏଥି ସମ୍ବନ୍ଧୀୟ କୌଣସି ଚିଠିପତ୍ର ବ୍ୟବହାରକୁ ଆଣିଯିବ ନାହିଁ ।

Name ............................ Age ............................

Address ..........................................................

ଆପଣଙ୍କ ନାମ ଓ ଠିକଣା ଇଂରାଜୀରେ ଲେଖନ୍ତୁ

ବସ୍ତାକର ସଂପୂର୍ଣ୍ଣ ଚିତ୍ର ପେଣ୍ଟିଂ ଦେବାପ୍ରତି ଧ୍ୟାନ ରଖନ୍ତୁ ।

**CONTEST NO.13**

Vision

ବେ ପଠାଇବାର ଶେଷ ତାରିଖ ଃ *31-3-1980*

**Results of Chandamama—Camlin Colouring Contest No. 12 (Oriya)**

*1st Prize:* Sasanka Sekhar Sahoo, Bhubaneswar. *2nd Prize:* Umesh Chandra Mishra, Bhubaneswar. *3rd Prize:* Shakti Prasannachant, Bhubaneswar. *Consolation Prizes:* Narendra Kumar Jahu, Jajpur. Manar Ranjan Mishra, Puri. S. Chandrasekhar, Bhubaneswar. Deepak Kumar Panda, Biratung. Sitaram Mishra, Nayagarh.




# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

ଏ ସଂଖ୍ୟାର ଶତକଥା (ଭାରତ-କାହାଣୀ)ରେ ଶୁନଃ-ଶେପଙ୍କ ଅମର କାହାଣୀ ବର୍ଣ୍ଣିତ ହୋଇଛି । ଏ କାହାଣୀର ତାତ୍ପର୍ଯ୍ୟ ବିପୁଳ । ଏହା ପ୍ରତିପାଦିତ କରୁଛି ଯେ ଭକ୍ତି ଓ ପ୍ରାର୍ଥନା ଯେ କୌଣସି ବାହ୍ୟ ଅନୁଷ୍ଠାନ ଅପେକ୍ଷା ଅଧିକ ମୂଲ୍ୟବାନ୍ ।

*

## ଅମରବାଣୀ

ଦୁର୍ଜନୈସ୍ସହ ସମ୍ପର୍କଃ ଶତ୍ରୁତାପି ନ ଯୁଜ୍ୟତେ ।
ଗୃହୀତେ ଦହ୍ୟତେଽଙ୍ଗାରେ ଶାନ୍ତେ କୃଷ୍ଣାୟତେ କରଃ ॥

ଦୁର୍ଜନ ସହିତ ବନ୍ଧୁତା ଯେପରି ଅନୁଚିତ । ଶତ୍ରୁତା ବି ସେହିପରି ଅନୁଚିତ । ଜଳନ୍ତା ଅଙ୍ଗାରରେ ହାତ ଦେଲେ ହାତ ପୋଡ଼ିଯାଏ, ନିଆଁ ନ ଥିଲେ ବି ତାହା ହାତକୁ କଳା କରିଦିଏ ।

ବର୍ଷ : ୧୩ ମାର୍ଚ୍ଚ ୧୯୮୦ ଅଙ୍କ : ୯

ପ୍ରତିସଂଖ୍ୟା : ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦





# ପ୍ରଶ୍ନୋତ୍ତର

ପ୍ରଶ୍ନ : ଇଂରାଜୀ ଖବରକାଗଜମାନଙ୍କରେ "ନୀରବ ଉପତ୍ୟକା" ଶିରୋନାମାରେ ଗୋଟାଏ ସମ୍ବାଦ ବାରମ୍ବାର ପ୍ରକାଶ ପାଇବାର ଦେଖାଯାଉଛି । ଏହା କେଉଁଠାରେ ଅବସ୍ଥିତ ? ଏହା ନେଇ ସମସ୍ୟା କ'ଣ ?

ଉତ୍ତର : କେରଳର ପାଲଘାଟ ଜିଲ୍ଲା ଦେଇ ବିସ୍ତୃତ ଥିବା ପଶ୍ଚିମଘାଟ ପର୍ବତମାଳା ତଳେ "ନୀରବ ଉପତ୍ୟକା" ନାମକ ଅରଣ୍ୟ ରହିଛି । ଏହାର ଏଭଳି ନାମ ହେବାର ହେତୁ, ବଣଜଙ୍ଗଲରେ ଯେଉଁ ପତଙ୍ଗମାନେ ସର୍ବଦା ଝିଁ ଝିଁ ଶବ୍ଦ କରୁଥା'ନ୍ତି ଏ ବଣରେ ସେମାନେ ନାହାନ୍ତି । ଆଉ ଏକ ମତରେ ଏହାର ପ୍ରାଚୀନ ନାମ ହେଲା ସୈରନ୍ଧ୍ରୀ ବନ । ଯେତେବେଳେ ଇଂରାଜୀରେ ଏହାକୁ ଲେଖିବା ଆବଶ୍ୟକ ହେଲା, ଧ୍ୱନିଗତ ସାମଞ୍ଜସ୍ୟ ଯୋଗୁ ସାହେବମାନେ ସାଇଲେଣ୍ଟ ଭ୍ୟାଲି ବୋଲି ଲେଖିଲେ ।

ଏହି ଅରଣ୍ୟ ଅତ୍ୟନ୍ତ ପ୍ରାଚୀନ । ବନବିଶାରଦ ବୈଜ୍ଞାନିକମାନଙ୍କ ସକାଶେ ଏହା ଜ୍ଞାନ ବିଜ୍ଞାନର ବିଶାଳ ଚର୍ଚ୍ଚାକ୍ଷେତ୍ର ହୋଇପାରେ ।

କେରଳ ସରକାରଙ୍କ ବିଦ୍ୟୁତ୍ ବିଭାଗ ଏହି ଅରଣ୍ୟ ଅଞ୍ଚଳରେ ଅଧିକ ବିଦ୍ୟୁତ୍ ଉତ୍ପାଦନ ସକାଶେ ଗୋଟାଏ ବଡ଼ ଯୋଜନା କାର୍ଯ୍ୟକାରୀ କରିବାକୁ ଚାହାନ୍ତି । ଏହା ଫଳରେ ଅରଣ୍ୟର ଏକ ଅଂଶ ଜଳମଗ୍ନ ହେବ । ଆଖପାଖରେ ଜନବସତି, ହାଟ ବଜାର ଗଢ଼ିଉଠିବ । "ନୀରବ ଉପତ୍ୟକା" ତେଣିକି ଆଉ ତା'ର ପ୍ରାଗୈତିହାସିକ ଚରିତ୍ର ବଜାୟ ରଖିପାରିବ ନାହିଁ ।

ବିଶିଷ୍ଟ ବୈଜ୍ଞାନିକମାନେ ଏ ଯୋଜନାର ଘୋର ବିରୋଧ କରୁଛନ୍ତି । ଭୂଭାଗର ଏକ ତୃତୀୟାଂଶ ଅରଣ୍ୟ ରୂପେ ରହିବା ଆବଶ୍ୟକ । ନହେଲେ ପ୍ରାକୃତିକ ଭାରସାମ୍ୟ ନଷ୍ଟ ହୁଏ । ଭାରତରେ ଏକଦା ବହୁ ବ୍ୟାପକ ଅରଣ୍ୟ ରହିଥିଲେ । ଆଜିକାଲି ଅଧିକାଂଶ ଲୁପ୍ତ । ଆମର ଅରଣ୍ୟ ପରିମାଣ ଏକ-ତୃତୀୟାଂଶରୁ ବହୁତ କମ୍ । ଆଜିକାଲି ଯେ ଅସ୍ୱାଭାବିକ ବନ୍ୟା ହେଉଛି, ଋତୁର ଗୁଣ ବଦଳିଯାଉଛି, ଅରଣ୍ୟର ନିର୍ବିଚାର ବିନାଶହିଁ ଏସବୁର ହେତୁ ବୋଲି ବହୁ ବୈଜ୍ଞାନିକଙ୍କ ମତ । "ନୀରବ ଉପତ୍ୟକା" ଧ୍ୱଂସ ହେଲେ ଜଳବାୟୁ ପରିବର୍ତ୍ତନ ଦ୍ୱାରା ଯେଉଁ କ୍ଷତି ହେବ, ସହସ୍ରକୋଟି ଟଙ୍କା ଲାଭ ହେଲେ ବି ସେ କ୍ଷତି ପୂରଣ ହୋଇ ପାରିବ ନାହିଁ ।




ମାର୍କଣ୍ଡ କପରି ରାଜପରିବାର ଉପରେ ପ୍ରତିଶୋଧ ନେଲା, ସେ କାହାଣୀ ଶୁଣିସାରି ଅଗ୍ନ୍ୟନ୍ତଲେଖ କହିଲା : "ବାସ୍ତବିକ, ରାଜାର ବା ଅଭାବ କ'ଣ ଥିଲା ! ତଥାପି ଅଳଙ୍କାର ଲୋଭରେ ନିଜ ପରିବାର ହରାଇଲା । ଲୋଭ କେଡ଼େ ଖରାପ, ଏ ଜ୍ଞାନ ହେବା ବେଳକୁ ଯାହା କ୍ଷତି ହେବାର ତାହା ହୋଇସାରିଥାଏ ।"

"ଭାଇ, ତୁମକୁ ମୁଁ ପ୍ରଥମରୁ ସାବଧାନ କରାଇଦେଇଥିଲି । ତେଣୁ କ୍ଷତି ହେବା ପୂର୍ବରୁ ତୁମର ଚେତିବା ଦରକାର ଥିଲା । ତୁମେ ସେହି ଗାୟକଗର୍ଦ୍ଦଭ ଭଳି ବ୍ୟବହାର କରି ବିପଦ ବରଣ କଲ ସିନା !"

ଏହା ପରେ ଅଗ୍ନିଲେଖ ଗାୟକଗର୍ଦ୍ଦଭର କାହାଣୀଟି ଶୁଣାଇଲା :

ଅନେକ ଦିନ ତଳର କଥା । ଜଣେକ ରଜକର ଥାଏ ଗୋଟାଏ ଗଧ । ଦିନବେଳେ ଗଧ ତା' ମାଲିକ ପାଇଁ ଲୁଗାପଟା ବୋହୁଥାଏ । ରାତି ହେଲେ ମନଇଚ୍ଛା ବୁଲି ଚରେ । ଦିନେ ରାତିରେ ସେ ଗୋଟାଏ ଓଟକୁ ଭେଟିଲା । ଉଭୟଙ୍କ ଭିତରେ ବନ୍ଧୁତା ହେଲା । ଉଭୟେ ଗୋଟାଏ ବଡ଼ ବଗିଚାରେ ପଶି ପ୍ରଚୁର ଫଳ ପେଟରେ ପକାନ୍ତି । ଭୋର ହେବା ପୂର୍ବରୁ ସେଠୁଁ ଘରକୁ ଲେଉଟିଯା'ନ୍ତି ।

ଦିନେ ରାତିରେ ଗର୍ଦ୍ଦଭ କ୍ଷେତ ପାଖରେ ଠିଆ ହୋଇ କହିଲା, "ବନ୍ଧୁ ! ଦେଖ କମିତି ଜ୍ୟୋତ୍ସ୍ନା ହୋଇଛି । ମନ ଉଲ୍ଲସିଉଠୁଛି । ବର୍ତ୍ତମାନ ଗୀତ ଗାଇବା ସମୟ । କୁହ ବନ୍ଧୁ, କେଉଁ ରାଗ ଶୁଣିବାକୁ ଇଚ୍ଛା କର ?"

"ପ୍ରିୟ ଗର୍ଦ୍ଦଭ ! ତୁମେ ସେଭଳି ଅଭିଳାଷ ସମ୍ବରଣ କର । ଆମେ ପରର କ୍ଷେତରୁ ଚୋରି



କରୁଛୁ । ଚୋରିର ଯଥେଷ୍ଟ ସତର୍କ ଭାବରେ ନିଜ କାମ କରିବା ଲୋଡ଼ା । ସେଥିପାଇଁ ଶ୍ୱାସରୋଗୀ ଓ ନିଦ୍ରାଳୁ ଲୋକେ ଚୋରି କରିବାକୁ ଯିବା ଅନୁଚିତ । ଆଉ ଗୋଟାଏ କଥା । ତୁମ କଣ୍ଠ-ସ୍ୱର ଏପରି, ତାହା ଶୁଣିଲେ ଯେ କୌଣସି ଲୋକର ଶାନ୍ତି ନଷ୍ଟ ହେବ । ପହରାଦାରମାନେ ଉଠିପଡ଼ି ଆମକୁ ଧରିବାକୁ ଆସିବେ । ଆମ ପିଠିରେ ମାଡ଼ ବସିବା ମଧ୍ୟ ଅସମ୍ଭବ ନୁହେଁ । ଅତଏବ ଭାଇ, ଗୀତ ଗାଇବା କଥା ଭୁଲିଯାଅ । ଯାହା ଖାଇବା କଥା, ଖୁସିରେ ଖାଇନେବା ।”

ଗର୍ଦ୍ଦଭ କ୍ଷୁଣ୍ଣ ହୋଇ କହିଲା, “ବନ୍ଧୁ, ତୁମେ ଏତେ ଅରସିକ ବୋଲି ମୁଁ ଜାଣି ନ ଥିଲି । କଥାରେ ଅଛି, ସଙ୍ଗୀତ ବା କଳାପ୍ରେମୀଙ୍କ ଗହଣରେ ରହିବା ଭାଗ୍ୟର କଥା । ତୁମେ ମୋ ଭଳି ସଙ୍ଗୀତଜ୍ଞ ସହ ରହି ନିଜକୁ ଭାଗ୍ୟବାନ୍ ବୋଲି ମନେ କରିବା ଉଚିତ । କିନ୍ତୁ ତୁମର ସେ ଜ୍ଞାନ ନାହିଁ ଦେଖୁଛି ।”

“ଶୁଣ ଗର୍ଦ୍ଦଭ, ତୁମେ ଯାହା କହିଲ, ତତ୍ତ୍ୱ ହିସାବରେ ତାହା ଠିକ୍ । କିନ୍ତୁ ତୁମେ ସଙ୍ଗୀତଜ୍ଞ ନୁହଁ । ତୁମେ ତୁଚ୍ଛା ରଡ଼ି ଛାଡ଼ିପାର । ତୁମ ରଡ଼ିରେ ଆମର ଅନିଷ୍ଟ ହିଁ ହେବ ।” ଓଟ କହିଲା ।

“ମୂର୍ଖ ! ମୋର ସଙ୍ଗୀତ ଜ୍ଞାନ ନାହିଁ, ଏ କଥା କହିଲା ଭଳି ବଡ଼ିମା ପୁଣି ତୁମର ହେଲା ! ଶୁଣ । ସଙ୍ଗୀତର ସାତ ସ୍ୱର, ସ୍ଥାୟୀ ତିନି, ମୂର୍ଚ୍ଛନା ଏକୋଇଶ, ରାଗ ଛତିଶ, ଭାବ ଉଣଚାଳିଶ । ଭରତମୁନିଙ୍କ ରଚିତ ନାଟ୍ୟ ଶାସ୍ତ୍ରରେ ୧୮ଟି ଅଧ୍ୟାୟ ରହିଛି । ତାଙ୍କ ମତରେ ବେଦ ଶାସ୍ତ୍ର ପରେହିଁ ସଙ୍ଗୀତ ଶାସ୍ତ୍ରର ସ୍ଥାନ । ନିଜ ସ୍ନାୟୁ ଶୁଖାଇ ସେଥିରେ ତନ୍ତ୍ରୀ ନିର୍ମାଣ କରି ଲଙ୍କାର ରାବଣ ସଙ୍ଗୀତର ଝଙ୍କାର ତୋଳି ଶିବଙ୍କୁ ସନ୍ତୁଷ୍ଟ କରି ପାରିଥିଲା । ମୁଁ ଏତେ କଥା ଜାଣେ । ଏହା ସତ୍ତ୍ୱେ ତୁମେ ମୋତେ ସଙ୍ଗୀତଜ୍ଞ ବୋଲି ମାନିବାକୁ ପ୍ରସ୍ତୁତ ନୁହେଁ । ମୋତେ ସଙ୍ଗୀତ ଚର୍ଚ୍ଚାରୁ ନିବର୍ତ୍ତାଇବାକୁ ଚେଷ୍ଟା କରୁଛ । ଏହା କ'ଣ ଭଲ କଥା ?” ଗର୍ଦ୍ଦଭ କହିଲା ।

ଓଟ ଯେତେବେଳେ ବୁଝିଲା ଯେ ଗର୍ଦ୍ଦଭ ଗୀତ ନ ବୋଲି ଛାଡ଼ିବ ନାହିଁ, ସେ କହିଲା, "ହେଲା ତେବେ । ତୁମେ ଗୀତ ବୋଲ । ମୁଁ ରାସ୍ତା ପାଖକୁ ଯାଇ ଲକ୍ଷ୍ୟ ରଖୁଛି । କେତେ-ବେଳେ ବଗିଚାର ମାଲିକ ଆସି ପହଞ୍ଚିବ କିଏ କହିବ !"

ଓଟ ଦୂରେଇଗଲା । ଗର୍ଦ୍ଦଭ ସେଇଠୁ ପ୍ରଚଣ୍ଡ କଣ୍ଠରେ ଗୀତ ବୋଲିବାକୁ ଆରମ୍ଭ କଲା । ବଗିଚାର ମାଲିକ ଅଳ୍ପ ଦୂରରେ ଗୋଟାଏ ଛୁଲିଘରେ ଶୋଇଥିଲା । ସେ ଦୌଡ଼ିଆସି ଗର୍ଦ୍ଦଭକୁ ଏମିତି ପିଟା ପିଟିଲା ଯେ ଗର୍ଦ୍ଦଭ ତଳେ ପଡ଼ିଗଲା । ମାଲିକ ଗର୍ଦ୍ଦଭ ଗଳାରେ ଖଣ୍ଡିଏ ପଥର ବାନ୍ଧିଦେଇ ଚାଲିଗଲା ।

କିଛି ସମୟ ଉତ୍ତାରୁ ଗର୍ଦ୍ଦଭର ଜ୍ଞାନ ଫେରି-ଆସିଲା । ସେ ପଥର ସମେତ କୌଣସି ମତେ ପଳାଇଲା ।

ଓଟ ସହ ଦେଖା ହେବାରୁ ଓଟ ତାକୁ କହିଲା, "ତୁମେ ତ ପାଟି କରି ଗୀତ ବୋଲୁ-ଥିଲ । ହଠାତ୍ ବନ୍ଦ କଲ କାହିଁକି ? ତୁମ ଗଳାରେ ଝୁଲୁଛି କ'ଣ ? ଓହୋ ! ତୁମ ସଙ୍ଗୀତରେ ମୁଗ୍ଧ ହୋଇ କ୍ଷେତର ମାଲିକ ତୁମକୁ ଏ ହାର ଉପହାର ଦେଇଛି ପରା !"

ଗର୍ଦ୍ଦଭ କିଛି କହିଲା ନାହିଁ ।

କାହାଣୀଟି ଶୁଣିସାରି ଅତ୍ୟନ୍ତଲୋଭୀ କହିଲା,



"ତୁମେ ସତ କହିଲ । ମୁଁ ଏବେ ବୁଝିଲିଣି । ଯିଏ ନିଜେ କର୍ମର ଭଲମନ୍ଦ ବୁଝି ନ ପାରେ, ଅନ୍ତତଃ ବନ୍ଧୁବାନ୍ଧବଙ୍କ ପରାମର୍ଶ ଗ୍ରହଣ କରିବା ଆବଶ୍ୟକ । ନ ହେଲେ ପରିଣାମ ଭୋଗିବାକୁ ହେବ । ଅଧିକ ଲୋଭର ବଶବର୍ତ୍ତୀ ହୋଇ ଯେତିକି ସମ୍ପଦ ମିଳିଥିଲା, ହରାଇଲି । ଗୋଟାଏ ଗଳ୍ପ ମନେ ପଡ଼ୁଛି ।"

ଅତ୍ୟନ୍ତଲୋଭୀ ଏହା ପରେ ଗପଟି କହିଲା :

ଗୋଟାଏ ସହରରେ ସ୍ୱଭାବକୃପଣ ନାମକ ଜଣେ ବ୍ରାହ୍ମଣ ଥିଲା । ଦିନେ କାହାରି ଘରେ ଭୋଜି ଖାଇବାକୁ ଯାଇ ଫେରିବା ବେଳକୁ ଦକ୍ଷିଣା ସ୍ୱରୂପ କିଛି ଗୁଡ଼ ପାଇଲା ।

ଚାଉଳ ପୁଟୁଳି ଧରି ସେ ଘରକୁ ଫେରୁଥାଏ । ବାଟରେ ଗୋଟାଏ ଗଛ ମୂଳରେ ସେ ବିଶ୍ରାମ କରିବାକୁ ବସିଲା । ବସିବା ବେଳେ ପୁଟୁଳାକୁ ଗୋଟାଏ ଗଛ ଡାଳରେ ବାନ୍ଧିଦେଇଥାଏ ।

ପୁଟୁଳା ଆଡ଼କୁ ଅନାଇ ହଠାତ୍ ତା' ମନକୁ ଏଇ କଥାମାନ ଆସିଲା : ଯଦି ଦୁର୍ଭିକ୍ଷ ପଡ଼ନ୍ତା, ତେବେ ଏତକ ଚାଉଳ ବିକି ବେଶ୍ ଦୁଇପଇସା ପାଆନ୍ତି । ସେଥିରେ ଦୁଇଟି ଛେଳି କିଣନ୍ତି । ସେମାନଙ୍କ ପିଲାପିଲି ହେଲେ ମୁଁ ଗୋଟାଏ ଛେଳିପଲର ମାଲିକ ହୋଇପାରନ୍ତି । କେତୋଟି ଛେଳି ବିକି କରି ମୁଁ ଗୋଟାଏ ଗାଈ କିଣନ୍ତି । କ୍ରମେ ଗାଈର ବି ପିଲାପିଲି ହୁଅନ୍ତା ଓ ମୁଁ ଗୋଟାଏ ଗୋରୁପଲର ମାଲିକ ହୁଅନ୍ତି । ତା'ପରେ କିଛି ଗୋରୁ ବିକି କରି ସେ ମୂଲ୍ୟରେ ଯୋଡ଼ାଏ ମଇଁଷି କିଣନ୍ତି । ସେମାନଙ୍କ ସଂଖ୍ୟା ବି ବଢ଼ନ୍ତା । ସେଥିରୁ କେତେଟି ବିକି କରି ଘୋଡ଼ା କିଣନ୍ତି । ଘୋଡ଼ା ବେପାରରେ ବହୁତ ଲାଭ ହୁଏ । ସେ ଲାଭରେ ଗୋଟାଏ ବଡ଼ କୋଠା ବନାନ୍ତି । ତା'ପରେ କୌଣସି ସୁନ୍ଦରୀ କନ୍ୟା ଦେଖି ବିଭା ହୁଅନ୍ତି । ପୁଅ ହେଲେ ତା' ନାମ ରଖନ୍ତି ସୋମ ଶର୍ମା ।

ଦିନେ ମୁଁ ମୋ ଘୋଡ଼ାଶାଳ ପଛପଟେ ବସି ପଢ଼ୁଥିବା ବେଳେ ସୋମଶର୍ମା ମୋ ଆଡ଼କୁ ଆସିବାର ଦେଖି ତା' ମାକୁ କହନ୍ତି, "ଆରେ, ପିଲାକୁ ଏଠାରୁ ନେଇଯା !" ସ୍ତ୍ରୀ ହୁଏତ ବ୍ୟସ୍ତ ଥାଇ ଆସିବାରେ ହେଳା କରନ୍ତା । ସଙ୍ଗେସଙ୍ଗେ ମୁଁ ଖଣ୍ଡିଏ ବାଡ଼ିରେ ତାକୁ ବାଡ଼େଇଦେଇ କହନ୍ତି, "ମୋ କଥା ଅମାନ୍ୟ କରୁଛୁ, ଏଡ଼େ ବଢ଼ପ !"

ବ୍ରାହ୍ମଣ ଏଇ କଳ୍ପନା କରିବା ସଙ୍ଗେ ସଙ୍ଗେ କଳ୍ପନାରେ ଅଭିଭୂତ ଥାଇ ପୁଟୁଳାକୁ ଲାଠିରେ ବାଡ଼େଇଦେଲା । ଚାଉଳତକ ଚାରିଆଡ଼େ ବିଞ୍ଚି-ହୋଇ ପଡ଼ିଲା । ଧୂଳିବାଲି ଭିତରୁ ସେ ଚାଉଳ ଗୋଟାଇବା ସମ୍ଭବ ହେଲା ନାହିଁ ।





# ଭଲ୍ଲୁକ ତାନ୍ତ୍ରିକ

[ ୧୯ ]

[ରାଜା ଜିତକେତୁ ଘୋଷଣା କଲେ କି ଯିଏ ମାୟାମର୍କଟ ହରାଇଥିବା ମନ୍ତ୍ରଦଣ୍ଡ ଆଣିଦେଇ ପାରିବ, ତାହା ସହ ସେ ନିଜ ପାଳିତା କନ୍ୟାର ବିବାହ ଦେବେ । ମାୟାମର୍କଟକୁ ଦୁର୍ଗ ପ୍ରାଚୀର ଉପରେ ବସିଥିବାର ଦେଖି ବଣୁଆ ଲୋକ ତା' ଆଡ଼କୁ ତୀର ନିକ୍ଷେପ କଲା । କିନ୍ତୁ ମାୟାମର୍କଟ ସେ ତୀରକୁ ଧରିପକାଇ ତାକୁ ପୁଣି ରତ୍ନବର୍ମା ଓ ଭଲ୍ଲୁକତାନ୍ତ୍ରିକ ଆଡ଼କୁ ଫୋପାଡ଼ି ଦେଲା । ତା'ପରେ···]

ତୀର ମାଡ଼ ଖାଇବା ପୂର୍ବରୁହିଁ ମାୟାମର୍କଟ ପାଟି କରି କହିଥିଲା, "ମୋ ମନ୍ତ୍ରଦଣ୍ଡ ଗଲା କୁଆଡ଼େ ?" ସେ ଚିତ୍କାର ସମସ୍ତେ ଶୁଣି ପାରିଥିଲେ ।

"ରତ୍ନବର୍ମା ! ଶୁଣିଲ ? ମୋ ପାଖରୁ ଯେଉଁ ମନ୍ତ୍ରଦଣ୍ଡ ଗୋଟିକ ମାୟାମର୍କଟ ଚୋରାଇ ନେଇଥିଲା, ସେ ଗୋଟିକ ତା' ପାଖରୁ ପୁଣି ଆଉ କିଏ ଚୋରାଇ ନେଲାଣି ! ତା' ଚିତ୍କାରର ତ ଏଇଆ ଅର୍ଥ !" ଭଲ୍ଲୁକତାନ୍ତ୍ରିକ ଉତ୍କଣ୍ଠିତ ଭାବରେ ରତ୍ନବର୍ମାଙ୍କୁ କହିଲେ ।

ରତ୍ନବର୍ମା କହିଲେ, "ହଁ ଗୁରୁଜୀ ଏ ମର୍କଟଠାରୁ ମନ୍ତ୍ରଦଣ୍ଡ କିଏ ଚୋରାଇ ନେଇଛି ! ନିଶ୍ଚୟ । କିନ୍ତୁ କିଏ ନେଲା ଆମେ ଜାଣିବା କିପରି ? ଆମେ ଏ ଦୁର୍ଗ ଭିତରେ ପ୍ରବେଶ



କରିବା ମଧ୍ୟ ସହଜ ନୁହେଁ । ଏହାର ଦ୍ୱାର ଲୌହନିର୍ମିତ । ରାଜା ଦୁର୍ମୁଖର ଦୁର୍ଗ କବାଟ ସିନା କାଠରେ ତିଆରି ହୋଇଥିଲା ବୋଲି ଆମେ ତାକୁ ସହଜରେ ପୋଡ଼ିଦେଇପାରିଲୁ !"

"ଆଜି ରାତିକ ଆମେ ଦୁର୍ଗ ବାହାରେ ଛାଉଣୀ ପକାଇ ଅପେକ୍ଷା କରିବୁ । ଏହାର କବାଟ କିପରି ଭଙ୍ଗାଯାଇ ପାରିବ, ସେକଥା ଆଗାମୀ କାଲି ବିଚାର କରିବା ।" ଭଲ୍ଲୂକତାନ୍ତ୍ରିକ କହିଲେ ।

ଏକଥା ଶୁଣି ରାକ୍ଷସ ଉଗ୍ରଦଣ୍ଡ କୁପିତ ହୋଇ ଦାନ୍ତ ରଗଡ଼ି କହିଲା, "ମୋ ପଥରଗଦା ସିନା ଦୁର୍ଗର କବାଟକୁ ଭାଙ୍ଗି ପାରିଲା ନାହିଁ । ଦୁର୍ଗ ପ୍ରାଚୀର ଉପରେ ଏହାର ପ୍ରୟୋଗ କରି ଦେଖେ । ଏହା କହି ସେ ପ୍ରାଚୀର ଉପରେ ପ୍ରଚଣ୍ଡ ଶକ୍ତି ପ୍ରୟୋଗ କରି ଗଦା ପ୍ରହାର କଲା । ପ୍ରାଚୀରର ଏକାଂଶ ଭାଙ୍ଗିପଡ଼ିଲା । ପଥର କେତେଖଣ୍ଡି ରାସ୍ତା ଦିଗକୁ ଗଡ଼ିଆସିବା ସଙ୍ଗେ ସଙ୍ଗେ ଦୁର୍ଗ ଭିତରୁ ସୈନ୍ୟମାନେ ଉଗ୍ରଦଣ୍ଡ ଉପରକୁ ଶର ବର୍ଷା କଲେ ।

ଭଲ୍ଲୂକତାନ୍ତ୍ରିକ ଉଗ୍ରଦଣ୍ଡକୁ ସେଠାରୁ ଘୁଞ୍ଚିଯିବାକୁ ନିର୍ଦ୍ଦେଶ ଦେଇ ରତ୍ନବର୍ମାଙ୍କୁ କହିଲେ, "ମୋର ସନ୍ଦେହ ହେଉଛି ଆଉ କୌଣସି ତାନ୍ତ୍ରିକ, ମାୟାମର୍କଟ ପାଖରୁ ମୋ ମନ୍ତ୍ରଦଣ୍ଡଟି ଛଡ଼ାଇ ନେଇଛି ।"

ଏଣେ ଭଲ୍ଲୂକତାନ୍ତ୍ରିକ ଏ ଆଶଙ୍କା ପ୍ରକାଶ କରୁଥିବା ବେଳେ ତେଣେ ମନ୍ତ୍ରଦଣ୍ଡଟି ପାଇଥିବା ଦୁଇ ବୈରାଗୀ ଯୁବକ ନଗରୀ ବାହାରେ ସରୋବର କୂଳରେ ଡେରା ପକାଇଥିବା ସେମାନଙ୍କ ଗୁରୁଙ୍କ ପାଖକୁ ଅଗ୍ରସର ହେଉଥିଲେ । ଭାଲୁର ପ୍ରହାରକୁ ଡରିଯାଇଥିବା ବେଳେ ମର୍କଟ ହାତରୁ ମନ୍ତ୍ରଦଣ୍ଡଟି ଖସି ପଡ଼ିଥିଲା ।

ବଡ଼ ଯୁବକଟି ସାନ ଯୁବକ ହାତରୁ ମନ୍ତ୍ରଦଣ୍ଡ ଖଣ୍ଡିକ ନିଜ ହାତକୁ ଆଣି କହିଲା, "ଗୁରୁଙ୍କୁ ଏହା ସମର୍ପିଦେବା ପୂର୍ବରୁ ଏହାର କରାମତି ଜାଣିବାକୁ ମୋର ଖୁବ୍ କୌତୂହଳ ହେଉଛି ।"

ସାନ ବୈରାଗୀ ମୁଣ୍ଡ ହଲାଇ ବଡ଼ କଥାକୁ ସମର୍ଥନ କଲା । ବଡ଼ଜଣକ ମନ୍ତ୍ରଦଣ୍ଡ ଉଠାଇ କହିଲା, "ହ୍ରାଂ ଟିଂ ଛୁଟ୍ ! ଗନ୍ତାଘର ଖୋଲି-ଯାଉ !" ଏହାପରେ ସେ ଦଣ୍ଡଦ୍ୱାରା ଜୋରରେ ତଳେ ଆଘାତ କଲା ।

ସେ ଶବ୍ଦ ଶୁଣି ଆଗରେ ବସିଥିବା ଗୁରୁ ବୈରାଗୀ ଆଖି ନ ଖୋଲି କହିଲା, "ଆରେ ଭୈରବ ବୈରାଗୀ ଆଗରେ ଭୁଲ୍ କରି ମନ୍ତ୍ର ଉଚ୍ଚାରଣ କରୁଛି କିଏ ସେ ? ମୁଁ ଏହିକ୍ଷଣି ତାକୁ ଭସ୍ମ କରିଦେବି ।" ଏହା କହି ଗୁରୁ ବୈରାଗୀ ନିଜର ପିତଳ ଓ ସୁନା କାମ କରା ହୋଇଥିବା ଦଣ୍ଡଖଣ୍ଡିକ ଉପରକୁ ଉଠାଇଲା ।

ଗୁରୁଙ୍କ କଥା ଶୁଣି ଦୁଇ ଯୁବକ ବୈରାଗୀ ଉତ୍ସୁକିତ ହୋଇଗଲେ । କିନ୍ତୁ ମନ୍ତ୍ରଦଣ୍ଡ ଆଘାତରେ ମାଟିରେ ଗୋଟାଏ ଫାଟ ଦେଖା-ଗଲା ଏବଂ ସେଥିରୁ ଜଳଧାରା ପିଚକାରି ମାରିଲା ଭଳି ଉଠିବାକୁ ଲାଗିଲା ।

ସେ ଦୃଶ୍ୟ ଦେଖି ଦୁଇ ଯୁବକ ବିସ୍ମିତ ହୋଇଗଲେ । ତେଣେ ଗୁରୁ ବୈରାଗୀ ଆଖି ଖୋଲିବା ବେଳକୁ ଜଳଧାରା ପ୍ରବଳ ଆକାର ଧାରଣ କରି ବର୍ଷା ଭଳି ଉପରୁ ପଡ଼ିଲାଣି ।

"ଆରେ ବିନା ମେଘ, ବିନା ବିଜୁଳିରେ ଇଏ କି ପ୍ରକାର ବର୍ଷା ?" ଏହା କହି ଗୁରୁ ବୈରାଗୀ ଆଗକୁ ଅନାଇ ନିଜର ଦୁଇ ଶିଷ୍ୟଙ୍କୁ ଦେଖି ପୁଣି କହିଲା, "ଆରେ, ମାଟିରୁ ଏଡ଼େ ପ୍ରବଳ ବେଗରେ ପାଣି ଶୂନ୍ୟକୁ ଉଠି ପୁଣି ପଡ଼ୁଛି ।"





ଦୁଇ ଯୁବକ ସାହାସ ବାନ୍ଧି କହିଲେ, "ଭୈରବ ଗୁରୁ ! ଆମର ମନ୍ତ୍ର ପ୍ରଭାବରେ ଏ ଆଶ୍ଚର୍ଯ୍ୟ କଥା ସମ୍ଭବପର ହେଲା । ବିଦ୍ୟାରେ ଆମର ସିଦ୍ଧି ହୋଇଗଲାଣି, ନା କ'ଣ କହୁଛନ୍ତି ?"

ଗୁରୁବୈରାଗୀ କିଛି ବୁଝି ପାରିଲା ନାହିଁ । ସେ ଅଗ୍ରସର ହୋଇ ଦୁଇ ଶିଷ୍ୟ ପାଖକୁ ଯାଇ ବଡ଼ ଶିଷ୍ୟ ହାତରେ ଦଣ୍ଡ ଦେଖି କହିଲା, "ଆରେ, ଇଏ କ'ଣ ? ମନ୍ତ୍ରଦଣ୍ଡ ଭଳି ତ ଦିଶୁଛି ।"

"ଗୁରୁ ! ମନ୍ତ୍ରଦଣ୍ଡ ଭଳି ନୁହେଁ, ଏହା ଖାସ୍ ମନ୍ତ୍ରଦଣ୍ଡ । ଆମେ ତିନୋଟି ତାନ୍ତ୍ରିକ ଶବ୍ଦ ଉଚ୍ଚାରଣ କରି ଗନ୍ତାଘର ଖୋଲି ଦେବାକୁ କହିଲୁ । କିନ୍ତୁ ବାହାରିଲା ପାତାଳଗଙ୍ଗା ।" ବଡ଼ ଶିଷ୍ୟ ଜଣାଇଲା ।

ଭୈରବ ବୈରାଗୀ ବଡ଼ ଶିଷ୍ୟ ହାତରୁ ମନ୍ତ୍ରଦଣ୍ଡଟି ନେଇ ଏଣେ ତେଣେ ବୁଲାଇ ତା'ପରେ କହିଲା; "ଏ ମନ୍ତ୍ରଦଣ୍ଡ କୌଣସି ତାନ୍ତ୍ରିକ ହାତରେ ବ୍ୟବହାର ହୋଇ ହୋଇ ଶକ୍ତିକଣ ହୋଇଯାଇଛି । କିନ୍ତୁ ତୁମମାନଙ୍କ ହାତରେ ଏହା କିପରି ପଡ଼ିଲା ? କେଉଁଠୁ ଚୋରି କରିନାହଁ ତ ? କାହିଁ ଏହାର ମାଲିକ ?"

ବଡ଼ ଶିଷ୍ୟ ସାନ ଶିଷ୍ୟକୁ ନୀରବ ରହିବାକୁ ଇଙ୍ଗିତ ଦେଇ ହଠାତ୍ ଗୁରୁ ହାତରୁ ମନ୍ତ୍ରଦଣ୍ଡଟି ଛଡ଼ାଇ ନେଲା ଓ କହିଲା, "ଗୁରୁଜୀ, ପ୍ରଥମେ ଆମକୁ ଏ ଜଳଧାରା ବନ୍ଦ କରିବାକୁ ହେବ । ନ ହେଲେ ଗୃହୁଁ ଗୃହୁଁ ଏ ସାରା ଅଞ୍ଚଳ ବୁଡ଼ିଯିବ ।" ଏହା କହି ସେ ମନ୍ତ୍ରଦଣ୍ଡ ଉପରକୁ ଉଠାଇ କହିଲା, "ଗନ୍ତାଘର ବନ୍ଦ ହେଉ !" ଏହା କହି ସେ ଜଳ ବାହାରୁଥିବା ସ୍ଥାନରେ ମନ୍ତ୍ରଦଣ୍ଡ ଦ୍ୱାରା ଆଘାତ କଲା ।

ସେ ଆଘାତରେ ମାଟିରେ ଏକ ବିରାଟ ଫାଟ ଦେଖା ଦେଲା । ଗୋଟାଏ ବିଶାଳ ଖାଇର ସୃଷ୍ଟି ହେଲା । ଭୈରବବୈରାଗୀ ବିସ୍ମୟ ଓ ଉତ୍ତେଜନାରେ ଅଧୀର ହୋଇ କହିଲା, "ଆରେ ମୋର ପ୍ରିୟ ଶିଷ୍ୟ ! ତୁମେ ଯେପରି ଭାବରେ

ଏ ମନ୍ତ୍ରଦଣ୍ଡ ପାଇଥାଅ ନା କାହିଁକି, ବର୍ତ୍ତମାନ ତୁମର କର୍ତ୍ତବ୍ୟ ହେଲା ଏ ଗୋଟିକ ମୋତେ ଉପହାର ସ୍ୱରୂପ ଦେଇଦେବା । ଅବଶ୍ୟ ତୁମ୍ଭେ-ମାନେ ତାହାହିଁ କରିବ ବୋଲି ମୁଁ ଜାଣେ । ତୁମ ଗୁରୁଭକ୍ତିରେ ମୁଁ ପ୍ରସନ୍ନ । ଜଳଧାରା ବନ୍ଦ ହୋଇଗଲାଣି । ଭିତରେ ଗନ୍ତାଘର ଥିବ ପରା । ଯାଅ, ଭିତରେ ପଶି ଦେଖ ।"



ସାନ ଶିଷ୍ୟ ଶଙ୍କିତ ଆଖିରେ ମନ୍ତ୍ରଦଣ୍ଡ ଆଡ଼କୁ ଅନାଇଥାଏ । ସେ କହିଲା, "ଭୈରବ ଗୁରୁ ! ଏ ମନ୍ତ୍ରଦଣ୍ଡର ଶକ୍ତି ଉପରେ ବିଶ୍ୱାସ ରଖି ଆମେ କୌଣସି ବିପଦରେ ପଡ଼ିବା ନାହିଁ ତ ? ମୋର କାହିଁକି ଭୟ ହେଉଛି । ଆମେ ଗନ୍ତାଘର ଖୋଲିବାକୁ କହିଲୁ । ଅଥଚ ବାହାରିଲା ଜଳ । ଆମକୁ ଯେ ଗନ୍ତାଘରର ବିତ୍ତ ମିଳିବ, ସେ ବିଶ୍ୱାସ କାହିଁକି ହେଉ ନାହିଁ ।"

ଶିଷ୍ୟ ମୁହଁରୁ ଏହା ଶୁଣି ଭୈରବ ବୈରାଗୀ ମନ ମଧ୍ୟ ଶଙ୍କାଚ୍ଛନ୍ନ ହେଲା । ସେ ବି ଭାବିଲା, ମନ୍ତ୍ରଦଣ୍ଡଠାରୁ ଆମେ ଖୋଜିଲୁ ଗୋଟାଏ ଜିନିଷ, ଅଥଚ ମିଳିବ ଅନ୍ୟ ଗୋଟାଏ ଜିନିଷ, ଏହା ତ ବିଷମ କଥା !

ଭୈରବ ବୈରାଗୀ ଚିନ୍ତିତ ଭାବରେ ବଡ଼ ଶିଷ୍ୟ ହାତରୁ ମନ୍ତ୍ରଦଣ୍ଡଟି ନେଇ ତାକୁ ଭଲ ଭାବରେ ଦେଖିବାକୁ ଲାଗିଲା । ବଡ଼ ଶିଷ୍ୟ ହଠାତ୍ ହସି ଉଠି କହିଲା, "ଗୁରୁ ! ଏ ମନ୍ତ୍ର-ଦଣ୍ଡର ମହିମା କ'ଣ, ଆମେ ସେକଥା ଜାଣୁନା । କିନ୍ତୁ ଯେଉଁ ମର୍କଟ ପାଖରୁ ଆମେ ଏହା ପାଇଛୁ, ସେ ବର୍ତ୍ତମାନ ରାଜା ଜିତକେତୁର ମନ୍ତ୍ରୀ । ରାଜା ଘୋଷଣା କରିଛନ୍ତି, ଯିଏ ମନ୍ତ୍ରଦଣ୍ଡ ଉଦ୍ଧାର କରିଦେବ, ସିଏ ଅର୍ଦ୍ଧେକ ରାଜ୍ୟ ସାଥିକୁ ରାଜ-କନ୍ୟାକୁ ବି ବିବାହ ହୋଇପାରିବ ।"

ଅର୍ଦ୍ଧେକ ରାଜ୍ୟ ଓ ରାଜ୍ୟକନ୍ୟା ପାଇବା କଥା ଶୁଣି ଭୈରବ ବୈରାଗୀ ଉତ୍ସାହଭରରେ "ଜୟ ଗୁରୁ !" ବୋଲି ପାଟି କରି କହି ତା' ପରେ କହିଲା, "ମୋର ପ୍ରିୟ ଶିଷ୍ୟ ! ତୁମ୍ଭେ-ମାନେ ଏତେ ବଡ଼ କଥା ଏ ପର୍ଯ୍ୟନ୍ତ ମୋତେ କହି ନାହଁ କପରି ? ଶୁଣ, ଅର୍ଦ୍ଧେକ ରାଜ୍ୟ

ମୁଁ ନେବି । ତୁମ ଭିତରୁ ଜଣେ ରାଜକନ୍ୟାକୁ ବିବାହ କରିପାରି । ଏ ବ୍ୟବସ୍ଥା ବେଶ୍ ଭଲ ହେବ । କିନ୍ତୁ ରାଜା କଥାକୁ ବିଶ୍ୱାସ ଯିବା କିପରି ? ଆମଠାରୁ ମନ୍ତ୍ରଦଣ୍ଡ ପାଇବା ପରେ ସେ ଯଦି ଆମ ମୁଣ୍ଡକାଟ କରିବ, ତେବେ ଉପାୟ କ'ଣ ?"

ଏହା କହି ଭୈରବବୈରାଗୀ ବରଗଛ ମୂଳରେ ବସିପଡ଼ିଲା । ଗୁରୁ ଏଭଳି ଶଙ୍କା ପ୍ରକାଶ କରିବାର ଦେଖି ଶିଷ୍ୟ ଦୁଇଜଣ ମଧ୍ୟ ଶଙ୍କିତ ଦେଖାଗଲେ । ତେବେ ସାନ ଶିଷ୍ୟ ଫାଟ ପାଖକୁ ଯାଇ ସାବଧାନରେ ତଳକୁ ଅନାଇଲା ଏବଂ ବଡ଼ ଶିଷ୍ୟର ହାତ ଧରି ଟିକିଏ ତଳକୁ ଯାଇ କହିଲା, "ଆରେ, ମନେହୁଏ ତଳକୁ ସୁଡ଼ଙ୍ଗଟିଏ ଭିତରକୁ ପାହାଚ ବିସ୍ତୃତ ହୋଇ ଯାଇଛି ! ମନ୍ତ୍ରଦଣ୍ଡ ଘାତରେ ଆମ ସକାଶେ ଗନ୍ତାଘର ଖୋଲି ଦେଇ ନାହିଁ ତ !"




ଭୈରବବୈରାଗୀ ଖୁସୀ ହୋଇ ଶିଷ୍ୟ ଦୁହିଁଙ୍କ ପାଖକୁ ଆସିଲା ଓ କହିଲା, "ଶିଷ୍ୟ ! ଯଦି ଆମ ଭାଗ୍ୟରେ ଧନସମ୍ପଦ ରହିଥିବ, ତେବେ ଆମେ ନେଇ ନ ନେବା କାହିଁକି ? ତା'ପରେ ଏ ମନ୍ତ୍ରଦଣ୍ଡ ରାଜାଙ୍କୁ ଦେବା କି ନା । ସେକଥା ବିଚାର କରିବା ।" ଏହା କହି ସେ ଶିଷ୍ୟ ପଛେ ପଛେ ସୁଡ଼ଙ୍ଗ ଭିତରକୁ ଅବତରଣ କରିବାକୁ ଲାଗିଲା ।

ଗୁରୁ ଶିଷ୍ୟ କିଛି ତଳକୁ ଅଗ୍ରସର ହେଲେ । କ୍ରମେ ପାହାଚ ଶେଷ ହେଲା । ଦେଖିବା ବେଳକୁ ପାହାଚ ତଳବର୍ତ୍ତୀ ଅଞ୍ଚଳ ପାଣିରେ ଭର୍ତ୍ତି । ସେମାନେ କିଛି ଆଗକୁ ଯାଇ ଦେଖିଲେ ସୁଡ଼ଙ୍ଗ ଭିତରେ ଆଲୁଅ ଦିଶୁଛି ।

ଭୈରବବୈରାଗୀ ବହୁତ ଖୁସୀ ହୋଇ ଶିଷ୍ୟଙ୍କୁ କହିଲା, "ଆରେ ଶିଷ୍ୟ, ଏଇ ଯେଉଁ ଆଲୁଅ ଦେଖୁଛୁ, ସେ ମୋତି ମାଣିକ୍ୟର ଆଭା ଛଡ଼ା ଆଉ କିଛି ନୁହେଁ । ପ୍ରଶ୍ନ ହେଲା, ଯଦି କୌଣସି ଯକ୍ଷ ତାକୁ ଜଗିଥିବ, ତେବେ ଆମେ କରିବୁ କ'ଣ ?"



"ଗୁରୁ, ସେକଥା ସିନା ଗୁରୁ ହିସାବରେ ଆପଣ ଆମକୁ କହିବେ !" ବଡ଼ ଶିଷ୍ୟ କହିଲା ।

ସାନ ଶିଷ୍ୟ ହସି ପକାଇଲା ଓ କହିଲା, "ଆରେ ଭାଇ, ତୁମର ଟିକିଏ ବି ସାଧାରଣ ଜ୍ଞାନ ନାହିଁ ଦେଖୁଛି । ଯେଉଁ ମନ୍ତ୍ରଦଣ୍ଡ ଆମକୁ ଏ ଗନ୍ଧାଘରର ସନ୍ଧାନ ଦେଲା, ତାହାରି ବଳରେ ଆମେ କ'ଣ ଯକ୍ଷ କବଳରୁ ସମ୍ପତ୍ତିକ ନେଇଯାଇ ପାରିବୁ ନାହିଁ ? ଯଦି ଯକ୍ଷ ଥିବ, ଦଣ୍ଡ ଛୁଆଁଇଦେଲେହିଁ ସେ ଖତମ ହୋଇଯିବ ।"

"ଆରେ ଶିଷ୍ୟ, ତୁ କଥା ଭଲ କଥା କହୁଛୁ ଏକା ! ଖୁସୀ ହେଲି; ତୁମ୍ଭମାନଙ୍କୁ ଶିଷ୍ୟ କରିବା ମୋର ସାର୍ଥକ ହୋଇଛି । ବର୍ତ୍ତମାନ ଚୁପ୍‌ଚାପ୍ ଅଗ୍ରସର ହୋଇ ଚାଲ ।" ଭୈରବବୈରାଗୀ ସେ ଆଲୁଅ ଆଡ଼କୁ ମନ୍ତ୍ରଦଣ୍ଡ ଦେଖାଇ ଚାଲିଲା ।

ସେତିକିବେଳେ ସୁଡ଼ଙ୍ଗ ଉପରସ୍ଥ ମାଟି କମ୍ପିବାର ଜଣାଗଲା । ସଙ୍ଗେ ସଙ୍ଗେ ଶୁଣାଗଲା ହାତୀଙ୍କର ରଡ଼ି । ସୁଡ଼ଙ୍ଗ ଭିତରେ ତିନିହେଁ ଡରିଗଲେ । ପ୍ରଥମେ ଭୈରବବୈରାଗୀ ନିଜକୁ ସମ୍ଭାଳି ନେଇ କହିଲା, "ମନେହୁଏ ଆମ ବରଗଛ ତଳେ ହାତୀ ଚଢ଼ି କେହି ଆସି ପହଞ୍ଚିଛି । ଯଦି ଦୈବାତ୍ ସେ ଆମର ଏ ସୁଡ଼ଙ୍ଗ ଭିତରକୁ ପଶି ଆସିବ, ତେବେ ଆମେ କରିବା କ'ଣ ?"

"ଗୁରୁ ! ଆପଣହିଁ ଯାହା କରିବାର ତାହା କରିବେ । ଆମେ ବା କି ପରାମର୍ଶ ଦେଇ ପାରିବୁ ?" ବଡ଼ ଶିଷ୍ୟ କହିଲା ।

ସାନ ଶିଷ୍ୟ ପୁଣି ହସିଉଠି କହିଲା, "ଏତେ ଡରିଲେ ଚଳିବ ? ଯଦି ଉପର ଦେଇ କିଏ ହାତୀ ବା ଘୋଡ଼ା ଚଢ଼ି ଯାଉଛି, ତେବେ ସେ ତା' ନିଜ କାମରେ ଯାଉଛି । ଆମେ ଧନର ସନ୍ଧାନରେ ଅଗ୍ରସର ନ ହୋଇ ଏତେ କଥାରେ ମୁଣ୍ଡ ବୁଲାଇବା କିଆଁ ?"

ସେ ବାକ୍ୟ ପୂରା କରିବା ସଙ୍ଗେ ସଙ୍ଗେ ଆଗରେ ଖଣ୍ଡିଏ ମାଟି ଚେକା ଖସିପଡ଼ିଲା । ତିନିଜଣଯାକ ସୁଡ଼ଙ୍ଗ ଭିତରୁ କିପରି ବାହାରି

ଆସିବେ, ସେହି ଚନ୍ଦ୍ରାରେ ଫାଟ ଆଡ଼କୁ ଚାଲିଲେ ।

ସେତେବେଳେ ମାଟି ଉପରେ ଘାତକ-ଭଲ୍ଲୁକ ଓ ବଣୁଆ ଟୋକା ହାତୀ ଚଢ଼ି ରାସ୍ତାରେ ଡେରା ପକାଇବା ଭଳି ଜାଗାର ସନ୍ଧାନ କରୁଥିଲେ । ଗୋଟାଏ ହାତୀ ହଠାତ୍ ତଳେ ପଡ଼ିଗଲା । ଅନ୍ୟ ଗୋଟିକ ରଡ଼ି ଛାଡ଼ି ଆଗକୁ ମାଡ଼ିଗଲା । ଦୁହେଁ ହାତୀ ପିଠିରୁ ଓହ୍ଲାଇପଡ଼ିଲେ । ପରେ ପରେ ତଳେ ପଡ଼ିଯାଇଥିବା ହାତୀ ଉଠି-ପଡ଼ି ନିଜ ଶୁଣ୍ଢ ମାଟି ଉପରେ ପ୍ରହାର କଲା ।

ଘାତକଭଲ୍ଲୁକ ଥରେ ଚାରି ଆଡ଼କୁ ଅନାଇ ବଣୁଆ ଟୋକାକୁ କହିଲା, "ଶୁଣ, ରବିବର୍ମା ଏବଂ ଭଲ୍ଲୁକତାନ୍ତ୍ରିକ ମଧ୍ୟ ଥରେ ଆସି ଏ ଅଞ୍ଚଳ ଦେଖିଗଲେ ଭଲ ହୁଅନ୍ତା । ଏଠାରେ ଭଲ ପାଣି ରହିଛି । ପୁଣି ରାଜା ଜଡକେତୁର ଦୁର୍ଗ ମଧ୍ୟ ପାଖରେ । ତା'ଛଡ଼ା ଏଠାରେ ରହିଛି ଗୋଟାଏ ବରଗଛ । ମାୟାମର୍କଟ ଯଦି ସ୍ୱଭାବବଶତଃ ଗଛ ଚଢ଼ିବା ଉଦ୍ଦେଶ୍ୟରେ ଏଠାରେ ଆସି ପହଞ୍ଚିଯିବ, .ତେବେ ଆମେ ତାକୁ ଅକ୍ଳେଶରେ ଧରିନେବା ।"

ବଣୁଆ ଟୋକା ଘାତକଭଲ୍ଲୁକ କଥାରେ ବିଶେଷ ଧ୍ୟାନ ଦେଉ ନଥାଏ । ସେ ହାତୀକୁ ଏଣେ ତେଣେ ବୁଲାଇ ହାତୀର ଗୋଡ଼ରେ କୌଣସି ବିଶେଷ ଆଘାତ ଲାଗିଛି କି ନା ତାହା ଦେଖୁଥାଏ । ତେବେ ହାତୀ ପୂର୍ବ ଭଳି ସ୍ୱାଭାବିକ ଗତିରେ ଚାଲିବାର ଦେଖି ସେ ସନ୍ତୁଷ୍ଟ ହୋଇ ଘାତକଭଲ୍ଲୁକକୁ କହିଲା, "ଆମ ଭାଗ୍ୟ ଭଲ, ବାହନ କୌଣସି ଆଘାତ ପାଇନାହିଁ ।"

ସେତିକିବେଳେ ଗଛଡାଳରୁ ତଳକୁ ଡେଇଁପଡ଼ି ଗୋଟାଏ ଲୋକ କହିଲା, "ତୁମ ଭାଗ୍ୟ ଆହୁରି ଭଲ ଯେ କପଟ ବୈରାଗୀ ଯେଉଁ ଫାଟ ଦେଇ ସୁଡଙ୍ଗ ଭିତରେ ପଶିଛି, ତୁମ ହାତୀ ସେ ଫାଟ ପାଖକୁ ଯାଇ ନାହିଁ । ଯାଇଥିଲେ ତୁମ୍ଭେମାନେ ଏତେବେଳକୁ ଭୂଗର୍ଭରେ ଥାନ୍ତ ।"

ଘାତକଭଲ୍ଲୁକ ନିଜ କୁଠାରଟିକୁ ଉଞ୍ଚାଇ ଲୋକଟା ଆଡ଼କୁ ଦୌଡ଼ିଯାଇ ଧମକ ଦେଲା, "ଆରେ, ତୁ ପୁଣି କିଏ ? ମାୟାମର୍କଟର ଚର ନୋହଁ ତ ?

(କ୍ରମଶଃ)






# ନୀତି, ଅନୀତି, ଦୁର୍ନୀତି

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷାରୋହଣ କରି ଶବଟିକୁ ଉତାରିଆଣି କାନ୍ଧରେ ପକାଇ, ବର୍ଷା ଓ ବଜ୍ରପାତ ପ୍ରତି ଭ୍ରୂକ୍ଷେପ ନ କରି ଶୂନ୍‌ଶାନ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କଲେ । ମଧ୍ୟେ ମଧ୍ୟେ ବିଜୁଳି ଆଲୁଅରେ ବିକଟ ମୂର୍ତ୍ତିମାନ ଦିଶିଯାଉଥାଏ; ପୁଣି ଶ୍ୱାନଶ୍ୱାପଦଙ୍କ ରଡ଼ି ସହ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ।

ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ କୌଣସି ନୀତିନିୟମ ପାଳନ କରିବା ଉଦ୍ଦେଶ୍ୟରେ ଏଭଳି ଶ୍ରମ ସ୍ୱୀକାର କରୁଛ କି ନା ମୁଁ ଜାଣେନା । କିନ୍ତୁ ଅନେକ ସମୟରେ ନୀତିବାନ୍ ଲୋକେ ବି ସଂସାରରେ ଆଦର ପାଆନ୍ତି ନାହିଁ । ଦୁର୍ନୀତିପରାୟଣ ଲୋକେ ଦଣ୍ଡ ପାଆନ୍ତି ନାହିଁ । ତୁମକୁ ଗୋଟାଏ ଘଟଣା

ବେତାଳ କଥା



ଗପୁଛି, ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା : କେତେ ବର୍ଷ ତଳର କଥା । ଜଣେ ଜମିଦାରଙ୍କର ନିଜ ଗୁମାସ୍ତା ଉପରେ ଅଗାଧ ବିଶ୍ୱାସ ଥାଏ । ପ୍ରକୃତରେ ଜମିଦାରୀର ସବୁ ହାଲଚାଲ ଗୁମାସ୍ତା ବୁଝୁଥାନ୍ତି । କିଏ କେଉଁ ଚାକିରି ପାଇବ, କାହାକୁ କେଉଁ ଜମି ଦିଆହେବ, କିଏ ପୁରସ୍କାର ପାଇବ, କିଏ ଦଣ୍ଡ ପାଇବ, ସବୁ ଗୁମାସ୍ତା ଠିକ୍ କରୁଥାନ୍ତି । ତାଙ୍କ କଥା ଉପରେ ଜମିଦାର କେବେ କୌଣସି ଆପତ୍ତି କରୁ ନ ଥାନ୍ତି ।

ଯାହାର ଯେଉଁ କାମ ପଡୁଥାଏ, ସେ ଯାଇ ଗୁମାସ୍ତାଙ୍କୁ ଭେଟୁଥାଏ ଓ ଗୋଟାଏ ଦଣ୍ଡବତ ପକାଇ ନିଜ ସୁବିଧା ଅସୁବିଧା ଜଣାଉଥାଏ । ଗୁମାସ୍ତା ଯାହା କରିବାର କରୁଥାନ୍ତି ।

କ୍ରମେ କେହି କେହି ଲୋକ ପ୍ରଣାମ କରିବା ସଙ୍ଗେ ସଙ୍ଗେ କିଛି ଫଳମୂଳ ଭେଟି ଦେବାକୁ ଲାଗିଲେ । ତେଣିକି ସେଇଟା ପ୍ରଥା ହୋଇଗଲା । ଯିଏ ଯେଉଁ କାମରେ ଗୁମାସ୍ତାଙ୍କୁ ଭେଟିବାକୁ ଗଲା, ସିଏ ଭେଟି ନେଇ ଗଲା । ଧୀରେ ଧୀରେ ଫଳମୂଳ ପରିବର୍ତ୍ତେ କେହି କେହି ଟଙ୍କାପଇସା ଧରି ଗଲେ । କେଇବର୍ଷ ଭିତରେ ତେଣିକି ସେଇଟା ପ୍ରଥାରେ ପରିଣତ ହେଲା । ଗୁମାସ୍ତାଙ୍କ ପାଖକୁ ଯିଏ କୌଣସି କାମରେ ଯାଏ, ସିଏ ଟଙ୍କା ଧରି ଯାଏ ।

ଗୁମାସ୍ତା କ୍ରମେ ଟଙ୍କା ଧରି ଆସିଥିବା ଲୋକଙ୍କ ପ୍ରତି ଅଧିକ ଧ୍ୟାନ ଦେବାକୁ ଅଭ୍ୟସ୍ତ ହୋଇଗଲେ । ଗୁମାସ୍ତା ଯାହା ଟଙ୍କା ପାଆନ୍ତି, ସେଥିରେ ନିଜ ସ୍ତ୍ରୀ ପାଇଁ ସୁନା ଗହଣା ଗଢ଼ାଇ ଦିଅନ୍ତି । ସୁନା ଗହଣା ହିସାବରେ ସମ୍ପତ୍ତି ଜମାଇବା ସାଧାରଣ ରୀତି । କ୍ରମେ ତାଙ୍କ ସ୍ତ୍ରୀଙ୍କ ଦେହଯାକ ସୁନାଗହଣା ଭର୍ତ୍ତି ହୋଇଗଲା । ଘରେ ବି ମୂଲ୍ୟବାନ୍ ଖଟ, ମେଜ ଓ ଚୌକିମାନ ଶୋଭା ପାଇବାକୁ ଲାଗିଲା ।

ଲୋକେ ପରସ୍ପର କଥାବାର୍ତ୍ତା ହେଉଥାନ୍ତି : ଏ ଜମିଦାରୀରେ ଘୁଷ୍ ନ ଦେଲେ କିଛି ହୁଏ

ନାହିଁ । ଏଠାରେ ଯୋଗ୍ୟତାର ଆଦର ନାହିଁ ।

ଭାନୁ ବୋଲି ଜଣେ ଗରିବ ଲୋକ ଥାଏ । ବହୁ କଷ୍ଟରେ ସେ ପାଠ ପଢ଼ିଥାଏ । ସେ ଯେପରି ବିଦ୍ୱାନ୍, ସେହିପରି ନୀତିବାନ୍ । ସେ ଗୋଟାଏ ଚାକିରି ପାଇଁ କେତେଥର ଯାଇ ଗୁମାସ୍ତାଙ୍କୁ ଭେଟିଲା, କିନ୍ତୁ ଫଳ କିଛି ହେଉ ନ ଥାଏ । ସେ ଦଣ୍ଡବତ ପକାଏ, କିନ୍ତୁ ଭେଟି ବା ଟଙ୍କା ଦିଏ ନାହିଁ । ଗୁମାସ୍ତା ତା' କଥାରେ କର୍ଣ୍ଣପାତ କରନ୍ତି ନାହିଁ ।

ବିରକ୍ତ ହୋଇ ଦିନେ ଯାଇ ଭାନୁ ଖୋଦ୍ ଜମିଦାରଙ୍କୁ ସାକ୍ଷାତ୍ କଲା ଓ କହିଲା, "ହଜୁର୍, ଆପଣ ତ କିଛି ବୁଝୁନାହାନ୍ତି । ଆପଣଙ୍କ ଗୁମାସ୍ତା ନ୍ୟାୟ ଅନ୍ୟାୟ ବୁଝନ୍ତି ନାହିଁ, ଖାଲି ଘୁଷ୍ ବୁଝନ୍ତି । ମୂର୍ଖ ଆଦର ପାଏ, ବିଦ୍ୱାନ୍ ପାଏ ନାହିଁ ।"

ଏହା ଶୁଣି ଜମିଦାର ବିସ୍ମିତ ହେଲେ । ପୂର୍ବରୁ କେବେ କେହି ଏଭଳି ଅଭିଯୋଗ କରି ନ ଥିଲେ । ଗୁମାସ୍ତାଙ୍କ ଉପରେ ତାଙ୍କର ଥିଲା ଅଗାଧ ବିଶ୍ୱାସ । ସେ ଟିକିଏ ଚିନ୍ତା କରି କହିଲେ, "ଦେଖ ବାବୁ, ମୁଁ ଅନୁସନ୍ଧାନ କରି ଦେଖିବି । ତୁମ କଥା ଯଦି ସତ ବୋଲି ଜଣାଯିବ, ତେବେ ତୁମକୁହିଁ ଗୁମାସ୍ତା ପଦରେ ନିଯୁକ୍ତ ଦେବି ।"

ଗୋଟିଏ ଦୂରବର୍ତ୍ତୀ ଗାଁରେ ସେତିକିବେଳେ ଜମିଦାର ନୂଆ ମନ୍ଦିରଟିଏ ତୋଳାଇଥାନ୍ତି । ସେ ପାଏ ପୂଜକ-ନିଯୁକ୍ତ ହୋଇ ନ ଥାନ୍ତି ।





ସେ ଦୁଇଜଣ ବ୍ରାହ୍ମଣଙ୍କୁ ଡକାଇଲେ । ଜଣେ ବିଦ୍ୱାନ୍, ଓ ଶାସ୍ତ୍ରଜ୍ଞ । ଅନ୍ୟଜଣକ ନିରକ୍ଷର । ଦୁଇଜଣଙ୍କୁ ସେ କହିଲେ, "ତୁମେ ଦୁହେଁ ଯାଇ ଗୁମାସ୍ତାଙ୍କୁ ସାକ୍ଷାତ କର । ପ୍ରଥମଜଣକ କୌଣସି ଭେଟି ଦେବ ନାହିଁ । ଦ୍ୱିତୀୟଜଣକ ଥଳିଏ ଟଙ୍କା ଦେବ । ଦୁହେଁ ପୂଜକ ପଦ ପାଇଁ ପ୍ରାର୍ଥୀ ହେବ !"

ଦୁଇ ବ୍ରାହ୍ମଣ ପ୍ରାୟ ଏକ ସମୟରେ ଯାଇ ଗୁମାସ୍ତାଙ୍କ ପାଖରେ ପହଞ୍ଚିଲେ । ପ୍ରଥମଜଣକ ଥିଲେ ଗୁମାସ୍ତାଙ୍କ ସହପାଠୀ ଓ ପିଲାବେଳର ମିତ୍ର । ତାଙ୍କୁ ଦେଖି ଗୁମାସ୍ତା ଖୁସି ହୋଇଗଲେ । ଦୁଇ ମିତ୍ର ବହୁତ ସମୟ ଗପସପ ହେଲେ । ତେଣେ ଟଙ୍କାଥଳି ଧରିଥିବା ବ୍ରାହ୍ମଣ ଅପେକ୍ଷା କରିଥାନ୍ତି । ସୁଖଦୁଃଖ ହେବା ପରେ ପ୍ରଥମ ବ୍ରାହ୍ମଣ ପୂଜକ ପଦ ପାଇବା ପାଇଁ ନିଜ ଅଭିଳାଷ ବ୍ୟକ୍ତ କଲେ ।

"ତୁମ ଭଳି ପଣ୍ଡିତ ଯଦି ପୂଜକ ହେବାକୁ ଚାହିଁବେ, ଜମିଦାର ତ ଖୁସି ହେବେ । କୌଣସି ଅସୁବିଧା ହେବ ବୋଲି ତ ମୁଁ ଭାବୁନାହିଁ । ଯାଅ, ଜମିଦାରଙ୍କୁ ମୁଁ ତୁମ କଥା ଜଣାଇବି ।" ଗୁମାସ୍ତା କହିଲେ ।

ତା'ପରେ ଦ୍ୱିତୀୟ ବ୍ରାହ୍ମଣଙ୍କ ସହ କଥାବାର୍ତ୍ତା ହୋଇ ସେ କହିଲେ, "ତୁମେ ତ ଶାସ୍ତ୍ର, ମନ୍ତ୍ର କିଛି ଜାଣନା । ତୁମକୁ ପୂଜକ ପଦ ଦେବା ପାଇଁ ମୁଁ ଜମିଦାରଙ୍କୁ କହିବି କିପରି ? ତୁମେ ଯାଅ । ଅନ୍ୟ କିଛି କାମ ପାଇଁ ଚେଷ୍ଟା କର ।"

ଦୁଇ ବ୍ରାହ୍ମଣଠାରୁ ସବୁ ଶୁଣି ଜମିଦାର ଭାଇକୁ ଡକାଇ କହିଲେ, "ବାବୁ, ତୁମ ଅଭି-ଯୋଗ ପ୍ରମାଣ ହୋଇପାରିଲା ନାହିଁ ।"

"ପ୍ରମାଣ ? ହଜୁର୍, ପ୍ରମାଣ ତ ଜ୍ୱାଜ୍ଜ୍ୱଲ୍ୟମାନ ! ଯିଏ ଗୁମାସ୍ତାଙ୍କ ସ୍ତ୍ରୀଙ୍କ ଆଡକୁ ଅନାଇଦେବ, ସିଏ ପ୍ରମାଣ ପାଇଯିବ; ଯିଏ ତାଙ୍କ ଘର ପିଣ୍ଡାକୁ ଉଠିଯିବ, ସିଏ ତ ବୁଝିଯିବ । ସେ ଅଳଙ୍କାର ବୋଝ, ସେ ମୂଲ୍ୟବାନ୍ ଆସବାବପତ୍ର କ'ଣ ନ୍ୟାଯ୍ୟତଃ ସେ ପାଉଥିବା ବେତନ ଦ୍ୱାରା

ଘଡ଼ାଇବା ସମ୍ଭବ ?" ଶାନୁ ଦୃଢ଼ ସ୍ୱରରେ କହିଲା ।

ଜମିଦାର ଦୁଇଦିନ ପରେ ଆସିବାକୁ କହି ବିଦାୟ କରିଦେଲେ । ତା'ପରେ ବୁଲି ଦେଖିବା ବାହାନାରେ ସେ ପୂର୍ବରୁ କୌଣସି ଖବର ନ ଦେଇ ଗୁମାସ୍ତା ଘରେ ନିଜେ ପହଞ୍ଚିଯାଇ ସ୍ୱଷୂଷ ସବୁ ଦେଖିବେ ବୋଲି ସ୍ଥିର କଲେ ।

ଜମିଦାର ଯେଉଁଦିନ ବାହାରିଲେ, ତାହାର ଦୁଇ ଦିନ ପୂର୍ବରୁ ଗୁମାସ୍ତାଙ୍କ ଶଳା ଆସି ଗୁମାସ୍ତାଙ୍କୁ କହିଥିଲା, "ଭାଇ, ଆମ ଗାଁରେ ଗୋଟାଏ ଶହେମାଣ ପରିମିତ ଉଦ୍ୟାନ ବିକ୍ରି ହେଉଛି । ଆମ ସେଠାକାର ଜମିଦାର ହଠାତ୍ ଅସୁବିଧାରେ ପଡ଼ି ତାକୁ ବିକୁଛନ୍ତି । ବର୍ତ୍ତମାନ କିଣିନେଲେ ପରେ ପାଞ୍ଚଗୁଣ ମୂଲ୍ୟରେ ଖଣ୍ଡ ଖଣ୍ଡ ଜମି ବିକିହେବ । ମୋର ତ ଟଙ୍କା ନାହିଁ, ତୁମେ ହେଲେ କିଣ ।"

ଗୁମାସ୍ତା କହିଥିଲେ, ତୁମେହିଁ କିଣ । ସେତେ ଦୂରରେ ସମ୍ପତ୍ତି କିଣି ମୁଁ କ'ଣ କରିବ ? ବରଂ ଲାଭ ପାଇଲେ ମୋତେ ପରେ କିଛି ଦେବ ।" କହି ସେ ସ୍ତ୍ରୀଙ୍କର ଅଳଙ୍କାରତକ ବିକିବାକୁ ଦେଇଦେଇଥିଲେ ।

ପୁଣି ଠିକ୍ ସେଇଦିନ ତାଙ୍କ ସମୁଧୀର ଝିଅ ବାହାଘର ହେଉଥାଏ । ତାଙ୍କ ଘରର ସବୁ ଆସବାବପତ୍ର ସମୁଧୀ ଘରକୁ ଯାଇଥାଏ ।

ସେହି ଅବସ୍ଥାରେ ଜମିଦାର ଯାଇ ଗୁମାସ୍ତା ଘରେ ପହଞ୍ଚିଲେ । ଗୁମାସ୍ତା ବ୍ୟସ୍ତ ହୋଇ-





ପଡ଼ି କହିଲେ, "ଆଜ୍ଞା, ଆପଣଙ୍କୁ ବସାଇବା ଭଳି ଉପଯୁକ୍ତ ଚୌକିଟିଏ ମଧ୍ୟ ନାହିଁ ।" ଗୁମାସ୍ତାଙ୍କ ସ୍ତ୍ରୀ କଂସାପାତ୍ରରେ ଦୁଧ ପରଷିଲା ବେଳେ କହିଲେ, "ଆପଣଙ୍କୁ ଯେ ରୁପାପାତ୍ରରେ ପରଷିବି ସେ ଭାଗ୍ୟ ମୋର ହେଲା ନାହିଁ ।"

"ସେସବୁ ବିଷୟରେ ଚିନ୍ତା କର ନାହିଁ । ମୁଁ ଜମିଦାରି ବୁଲି ଦେଖିବାକୁ ବାହାରିଥିଲି । ମନ ହେଲା ବୋଲି ତୁମ ଘରକୁ ଚାଲିଆସିଲି ।" ଜମିଦାର କହିଲେ ।

"ହଜୁର୍, ମୁଁ ଆଜି ଉପରଓଳି ଯାଇଥାନ୍ତି । କିଛି ଖଜଣା ଏ ସପ୍ତାହରେ ଆଦାୟ ହୋଇଛି । ନେଇ ଯାଇଥାନ୍ତି ।" ଏହା କହି ଗୁମାସ୍ତା ଟଙ୍କାଥଳିଟିଏ ବାହାର କରି ଆଣିଲେ ।

"ଥାଉ, ଥାଉ, ସେସବୁ ହିସାବ ପରେ ହେବ । ମୁଁ ବୁଲି ବାହାରିଛି । ବୁଲିବୁଲି କରି ଫେରିଯିବି ।" ଏହା କହି ଜମିଦାର ଚାଲିଗଲେ । ସେ ଭଲଭାବରେ ଲକ୍ଷ୍ୟ କରି ଦେଖିଥିଲେ, ଗୁମାସ୍ତାଙ୍କ ସ୍ତ୍ରୀଙ୍କ ଦେହରେ କୌଣସି ମୂଲ୍ୟବାନ୍ ଗହଣା ନ ଥିଲା । ଘରେ କୌଣସି ମୂଲ୍ୟବାନ୍ ଆସବାବପତ୍ର ନ ଥିଲା ।

ଘରକୁ ଆସି ସେ ରାମୁକୁ ଡକାଇ କହିଲେ, "ହଇହୋ ବାବୁ, ତୁମେ ଏତେ ମିଥ୍ୟାବାଦୀ ? ଭଲଲୋକଙ୍କ ବିରୁଦ୍ଧରେ ଛୁଞ୍ଛାଟାରେ ଦୁର୍ନାମ ରଟାଇବା ଭଳି ସାହସ ହୁଏ କିପରି ? ଛିଃ, ଛିଃ । ତୁମର ଗୋଟାଏ ଅଭିଯୋଗ ହେଲେ ସତ୍ୟ ହୋଇଥାନ୍ତା !"

ରାମୁ ସ୍ତମ୍ଭୀଭୂତ ହୋଇ ରହିଲା । ତା'ପରେ କହିଲା, "ହଜୁର୍ ! ଭାଗ୍ୟହିଁ ଗୁମାସ୍ତାଙ୍କୁ ରକ୍ଷା କରିଛି ବୋଲି କହିବା ଛଡ଼ା ମୋର ଅନ୍ୟ ଗତି ନାହିଁ ।"

ବେତାଳ ଏତକ କହି ହଠାତ୍ ପଚାରିଲା, "ରାଜା ! ଗୁମାସ୍ତା ଭଳି ଦୁର୍ନୀତିପରାୟଣ ଲୋକ ଘଟଣାର ଯୋଗାଯୋଗ ହେତୁ ବର୍ତ୍ତିଗଲା । ଏଥିରୁ କ'ଣ ପ୍ରମାଣିତ ହେଉନାହିଁ ଯେ କର୍ମଫଳ ବୋଲି କିଛି ନାହିଁ, ଦୁର୍ନୀତି କରି ଲୋକେ ଆରାମରେ ରହିପାରନ୍ତି ? ଜାଣିଲେ ମୋ ପ୍ରଶ୍ନର

ଉତ୍ତର ଦିଅ । ଉତ୍ତର ଜାଣିକରି ବି ଯଦି ନୀରବ ରହିବ, ତେବେ ତୁମ ମସ୍ତକ ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ରଜା ବିକ୍ରମାର୍କ ଉତ୍ତର ଦେଲେ :

କର୍ମଫଳ ଫଳିବା ଅନିବାର୍ଯ୍ୟ । କିନ୍ତୁ କର୍ମଫଳ ସବୁବେଳେ ଦୃଶ୍ୟମାନ ଭାବରେ ଫଳିବ, ଏପରି କଥା ନାହିଁ । ନିଜର କୌଣସି ସୁକର୍ମ ହେତୁ ଗୁମାସ୍ତା ଜମିଦାରଙ୍କ ହାତରୁ ଯେପରି ରକ୍ଷା ପାଇଗଲା, ନିଜର ସେତିକି ଦୁଷ୍କର୍ମ ସେ ପାଇଁ ବି ପରେ ଘଟଣା ଚକ୍ରରେ ଶାସ୍ତି ପାଇବନାହିଁ ପାଇବ ।

ଆଉ ଗୋଟିଏ କଥା । ଦୁର୍ନୀତି ଓ ଅନୀତି ଏକା କଥା ନୁହେଁ । ପ୍ରଥମଟି ଖରାପ ଗୁଣ; ଦ୍ୱିତୀୟଟି ଭଲ ଗୁଣର ଅଭାବ । ସୁନୀତି ପରାୟଣ ଲୋକ ଯେତେ କମ୍ ଥା'ନ୍ତି, ଦୁର୍ନୀତି ପରାୟଣ ଲୋକ ମଧ୍ୟ ସେହିପରି କମ୍ ଥା'ନ୍ତି । ଅଧିକାଂଶ ସାଧାରଣ ଲୋକେ ଏ ଉଭୟଙ୍କ ମଝାମଝି ସ୍ତରରେ ଗଣ୍ୟ ହେବେ ।

ତୁମେ ଧରିନେଇଛ ଯେ ଗୁମାସ୍ତା ଦୁର୍ନୀତିପରାୟଣ । ତାହା ଠିକ୍ ନୁହେଁ । ସେ ନୀତିବାନ୍ ନୁହେଁ ସତ, କିନ୍ତୁ ଦୁର୍ନୀତିପରାୟଣ ବି ନୁହେଁ । ସମାଜରେ ଅଧିକାଂଶ ଲୋକଙ୍କ ଭିତରେ ଥିବା ଅନୀତି ତାହା ଭିତରେ ବି ସ୍ପଷ୍ଟ ହେଉଥିଲା । ଭୁଲିଗଲେ ଚଳିବ ନାହିଁ ଯେ ସେ କାହାକୁ ଘୁଷ୍ ମାଗିନାହିଁ । ଲୋକେ ନିଜ ନିଜ ଅନୀତିରୁ ତାକୁ ଭେଟି ଦେଇଛନ୍ତି । ସେ ଦୁର୍ନୀତିପରାୟଣ ହୋଇଥିଲେ ସମସ୍ତଙ୍କୁ ସ୍ପଷ୍ଟ ଘୁଷ୍ ମାଗିଥାନ୍ତା । ସେ ନୀତିବାନ୍ ନୁହେଁ କି ଦୁର୍ନୀତିପରାୟଣ ନୁହେଁ, ସେ ଅନୀତିପରାୟଣ ।"

ରଜାଙ୍କ ଉତ୍ତର ପାଇସାରିବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ପୁନର୍ବାର ବୃକ୍ଷ ଡାଳରେ ଝୁଲିପଡ଼ିଲା ।

(କଳ୍ପିତ)



# ସତ ସପନ !

ରାମଗୁପ୍ତ ଅତ୍ୟନ୍ତ କୃପଣ । ପ୍ରଚୁର ଟଙ୍କା ଥିବା ସତ୍ତ୍ୱେ ସେ ଗୋଟାଏ ବି ପଇସା ଦାନ କରେ ନାହିଁ । ଥରେ ସେ ସ୍ୱପ୍ନ ଦେଖିଲା, "ଶହେ ଟଙ୍କା ଖର୍ଚ୍ଚ କର, ହଜାରେ ମିଳିଯିବ ।"

ରାମଗୁପ୍ତ ଦୋଦୋପାଞ୍ଚ ହେଲା, କିନ୍ତୁ ଶେଷକୁ ଶହେ ଟଙ୍କା ଖର୍ଚ୍ଚ କରି ଲୋକଙ୍କୁ ଭୋଜି ଦେଲା । ଦୁଇ ଦିନ ପରେ ହଠାତ୍ ଗୋଟାଏ ପୋତା ଗରା ବାହାରିଲା । ସେଥିରେ ଥିଲା ହଜାରେ ଟଙ୍କା ।

ମାସକ ପରେ ସେ ସ୍ୱପ୍ନ ଦେଖିଲା, "ହଜାରେ ଖର୍ଚ୍ଚ କଲେ ଦଶ ହଜାର ମିଳିଯିବ ।" ଏଣିକି ସ୍ୱପ୍ନ ପ୍ରତି ଅବିଶ୍ୱାସର ପ୍ରଶ୍ନ ନ ଥିଲା । ରାମଗୁପ୍ତ ହଜାରେ ଖର୍ଚ୍ଚ କରି ଲୋକଙ୍କୁ ଖୁଆଇଲା । ଦୁଇଦିନ ପରେ ତା'ର ଜଣେ ମାମୁଁ ମରିଗଲେ । ତାଙ୍କର ସଞ୍ଚିତ ଥିବା ଦଶହଜାର ଟଙ୍କାର ସେ ଉତ୍ତରାଧିକାରୀ ହେଲା ।

ଛଅମାସ ପରେ ରାମଗୁପ୍ତର ସ୍ତ୍ରୀ ସ୍ୱପ୍ନ ଦେଖିଲା, "ଦଶହଜାର ଖର୍ଚ୍ଚ କଲେ ଲକ୍ଷେ ମିଳିଯିବ ।" ସ୍ତ୍ରୀଠାରୁ ସ୍ୱପ୍ନ ବୃତ୍ତାନ୍ତ ଶୁଣି ଆନନ୍ଦରେ ଉତ୍ଫୁଲ୍ଲ ଉଠିଲା ରାମଗୁପ୍ତ । ଦଶହଜାର ଖର୍ଚ୍ଚ କରି ସେ ଲୋକଙ୍କୁ ଭୋଜି ଦେଲା ।

ପରଦିନ ରାମଗୁପ୍ତ ମରିଗଲା । ତା'ର ଲକ୍ଷେ ଟଙ୍କାର ସମ୍ପତ୍ତି ତା' ସ୍ତ୍ରୀରହିଁ ହେଲା !





# ଗର୍ବର ଫଳ

ଶହେ ବର୍ଷ ତଳର କଥା । ମହୋବା ରାଜ୍ୟର ଦରବାରରେ ଜଗତସିଂହ ନାମରେ ଜଣେ ବିଖ୍ୟାତ ପହ୍ଲଲମାନ ଥିଲା । ସେ ଏକାବେଳକେ ଛଅଜଣ ଲୋକଙ୍କର ଖାଦ୍ୟ ଖାଇଦେଇ ପାରୁଥିଲା । ତା'ର ମାଂସପେଶୀ ସବୁବେଳେ ଫୁଲି ରହୁଥିଲା । ରାଜ୍ୟର ନାମ କରିଥିବା ମଲ୍ଲମାନେ ତା' ସହିତ ମଲ୍ଲଯୁଦ୍ଧ କରି ହାରିଯାଇଥିଲେ । ଯିଏ ଥରେ ତା' ସହିତ ମଲ୍ଲଯୁଦ୍ଧ କରିଛି ସେ ପ୍ରଥମରୁ ତ ହାରିଯାଏ, ପରେ ହାତଗୋଡ଼ ଭାଙ୍ଗିଥିବା ହେତୁ ଶଯ୍ୟାଶାୟୀ ହୋଇପଡ଼େ । ସେଥିପାଇଁ ସେ ଖୁବ୍ ଗର୍ବୀ ହୋଇଗଲା ଓ ନିର୍ବଳୁଆ ଲୋକଙ୍କ ସହିତ ଖରାପ ବ୍ୟବହାର କଲା । ହଠାତ୍ ଦୋକାନରେ ପଶିଯାଇ ନିଜ ଇଚ୍ଛା ଅନୁସାରେ ଯାହା କିଛି ଉଠାଇ ନେଇଯାଏ । କେହି କିଛି କହନ୍ତିନି । କହିଲେ ମାଡ଼ ।

ଥରେ ବୁଢ଼ୀଟିଏ ରାସ୍ତାଧାରରେ କମଳା ବିକୁଥାଏ, ଜଗତସିଂହ ଯାଇ ପାଞ୍ଚ ଛଅଟା କମଳା ଉଠାଇନେଲା । ବୁଢ଼ୀ ପଇସା ମାଗିବାରୁ କମଳା ଟୋକାଇକୁ ମାଇଲା ଏକ ଗୋଇଠା । ସେ ସବୁ କମଳା ବିଞ୍ଚିଗଲା ।

ବୁଢ଼ୀ ବିଚରା ଫଳସବୁ ଗୋଟାଉଥିବା ବେଳେ କହିଲା, "ଆରେ, ତୁ ତୋ ବୀରତ୍ୱ ମୋପରି ବୁଢ଼ୀ ଉପରେ କାହିଁକି ଦେଖାଉଛୁ ? ଯଦି ବୀର ହୋଇଥାଉ ଆମ ଗାଁ ପ୍ରତାପସିଂ ଉପରେ ଦେଖା ।"

"ତୋ ଗାଁ କେଉଁଠି ?" ଜଗତସିଂହ କ୍ରୁଦ୍ଧ-କଣ୍ଠରେ ପଚାରିଲା ।

"ମୋ ଗାଁ ଜମାଲପୁର ।" ବୁଢ଼ୀ କହିଲା ।

"ଆଲେ ବୁଢ଼ୀ ଧୋକସି, ରହିଥା' ମୋ ପରାକ୍ରମ ତୋ ଗାଁକୁ ଯାଇ ଦେଖାଉଛି । କାଲି

ଜୟସିଂହ



ଏତିକବେଳକୁ ପ୍ରତାପସିଂହର ଶବ ଆଣି ଏଇ ରାସ୍ତାରେ ତୋର ଆଗରେ ପୋପାଡ଼ଦେବି ।"

ଏକଥା କହି ଜଗତସିଂହ ଚାଲିଗଲା ।

ଜଗତସିଂହକୁ ଆଉ ରାତିରେ ନିଦ ନାହିଁ । ସକାଳୁ ସକାଳୁ ଗୋଟାଏ ଘୋଡ଼ାଗାଡ଼ିରେ ବସି ଜମାଲପୁରରେ ପହଞ୍ଚିଲା । ତାକୁ ଯିଏ ଦେଖୁଥାଏ ଡରରେ ପଳାଉଥାଏ । ସିଏ ଆହୁରି ଖୁସୀ ହୋଇ ନଶ ମୋଡ଼ି ମୋଡ଼ି ଏପଟ ସେପଟ ଦେଖୁଥାଏ । ଗୋଟାଏ ବୁଢ଼ାକୁ ରାସ୍ତାରେ ଦେଖି ପଚାରିଲା, "ଆବେ ବୁଢ଼ା, ଏ ଗାଁରେ ପ୍ରତାପସିଂହ କେଉଁଠି ଥାଏ କହିପାରିବୁ ?"

"ହଁ, ଏଇ ଗାଁ ବାହାରେ ଏକ ବଗିଚାରେ ମେଣ୍ଢା ଚରାଉଥାଏ ।" ବୁଢ଼ା କହିଲା ।

"ଆଚ୍ଛା । ଜାଣିଛୁ ମୁଁ କିଏ ?" ଜଗତସିଂହ ପଚାରିଲା ।

"ତୁମେ ମୋ ପରି ମଣିଷ ଜଣେ । ହେଲେ ତୁମେ ଯୁବକ, ସ୍ୱାସ୍ଥ୍ୟବାନ୍ ! ମୁଁ ବୁଢ଼ା, ଚମ ଧୁଡ଼ୁଧୁଡ଼ୁ ହେଲାଣି ।" କହି ବୁଢ଼ା, ବାଡ଼ି ଠୁକ୍-ଠୁକ୍ କରି ଚାଲିଗଲା ।

ସେଠୁ ଜଗତସିଂହ ଚାଲିଚାଲି ସେଇ ଗାଁ ଶେଷ ବଗିଚା ପର୍ଯ୍ୟନ୍ତ ଗଲା । ଦେଖିଲା ଜଣେ ଯୁବକ ତେନ୍ତୁଳଡାଳରୁ ପତ୍ର ଛିଣ୍ଡାଇ ମେଣ୍ଢା-ମାନଙ୍କୁ ଖାଇବାକୁ ଦେଉଛି ।

"କ'ଣ ତୁମର ନାଁ ପ୍ରତାପସିଂହ ?" ଜଗତ-ସିଂହ ପଚାରିଲା । ପ୍ରତାପସିଂହ ଆଗରୁ ଯାହା ଜଗତସିଂହ ବିଷୟରେ ଶୁଣିଥିଲା, ସେଥିଯୋଗୁ ତାକୁ ଜାଣିନେଲା । [illegible] ଦେବାକୁ ଇଚ୍ଛା ନ କରି କହିଲା, "ନା, ସେ ତ ମୋର ବଡ଼ଭାଇ । ଆପଣ ତ ରାଜାଙ୍କ ମଲ୍ଲ । ତେବେ ଭାଇ ସହିତ ଆପଣଙ୍କର କି କାମ ?"

"ଶୁଣିଲି ସେ ଖୁବ୍ ଗର୍ବୀ ହୋଇଯାଇଛି । ମୁଁ ତା'ର ଗର୍ବ ଖର୍ବ କରିବାକୁ ଆସିଛି ।" ଏ କଥା କହି ସେ ମଡ଼ମଡ଼ କରି ଏକ ବଡ଼ ତେନ୍ତୁଳି ଡାଳ ଭାଙ୍ଗିପକାଇଲା । ପ୍ରତାପସିଂହ ଆଶ୍ଚର୍ଯ୍ୟ ହେବାର ଅଭିନୟ କରି କହିଲା, "ଆପଣଙ୍କ ପରାକ୍ରମ ତୁଳନାରେ ତା'ର କ'ଣ ଅଛି ?"

"ଆରେ କହତ ବର୍ତ୍ତମାନ ସେ କେଉଁଠି ?" ଜଗତସିଂହ ହୁଙ୍କାର ଦେଇ କହିଉଠିଲା ।

"ସେ ଗୋଟିଏ ଗାଁକୁ ଯାଇଛି । ସେ ରାତିକୁ ଫେରିବ । ସେ ପର୍ଯ୍ୟନ୍ତ ଆପଣ ମୋ ପାଖରେ ଥା'ନ୍ତୁ । ମୁଁ ମେଣ୍ଢାମାନଙ୍କୁ ବାଡ଼ି ଭିତରେ ରଖି ଆସୁଛି ।" ପ୍ରତାପସିଂହ କହିଲା ।

ତା'ପରେ ପ୍ରତାପ ଜଗତସିଂହକୁ ଘରକୁ ନେଇଗଲା । ସେଠାରେ ପହଞ୍ଚି ତା' ମା'କୁ କହିଲା, "ମା, ଜଣେ ଅତିଥି ଆସିଛନ୍ତି । ତାଙ୍କ ପାଇଁ ମଧ୍ୟ ଖାଇବାକୁ ବ୍ୟବସ୍ଥା କରିବୁ ।"

"ଛି, ଛିଃ, ତୁମ୍ଭମାନଙ୍କର ଏ ସାଧା ଖାଇବା ମୋର ପେଟ ପାଇଁ ଯଥେଷ୍ଟ ନୁହେଁ ।" ଜଗତସିଂହ ତାଚ୍ଛଲ୍ୟ କରି କରି କହିଲା ।

"ମହାଶୟ, ମେଣ୍ଢାଗୁଡ଼ିକ ମୋର ନୁହନ୍ତି ଗ୍ରାମବାସୀଙ୍କର । ଆପଣ ଦୟାକରି ଆଜି ଦିନକ ଗରିବର ଆତିଥ୍ୟ ଗ୍ରହଣ କରନ୍ତୁ ।"

ଘଣ୍ଟାଏ ପରେ ଦୁହେଁ ଖାଇବାକୁ ବସିଲେ । ପ୍ରତାପର ମା' ଦୁଇଟି ବଡ଼ ଥାଳରେ ଖାଇବା ବାଢ଼ିଦେଲା ।

ଜଗତସିଂହ ପ୍ରଥମେ କିଛି ମୁହଁରେ ଦେଇ କହିଲା, "ଏହେ ଏଗୁଡ଼ାକ କିଏ ଖାଏ ? ଏଗୁଡ଼ାକ ତ ପଥର ପରି ହୋଇଛି ।"

"ଯେଉଁ ବୁଢ଼ାମାନଙ୍କର ଦାନ୍ତ ନ ଥାଏ ସେମାନଙ୍କ ପାଇଁ ସିନା ସମ୍ପୂର୍ଣ୍ଣ ସିଝା ଦିଆଯାଏ । କିନ୍ତୁ ପଥର ହଜମ କରିବା ଲୋକଙ୍କ ପାଇଁ ଏହା ତ ସୁବ୍ୟବସ୍ଥା ।" ପ୍ରତାପ କହିଲା । ଜଗତସିଂହ



ଟିକିଏ ଲଜ୍ଜା ଅନୁଭବ କଲା । କିନ୍ତୁ ମାଂସ ଖାଇବା ପୂର୍ବରୁ ଅଧାସିଝା ଭାତ ତା' ତଣ୍ଟିରେ ଗଳିଲା ନାହିଁ । ତେଣୁ ପାଣି ପିଇପିଇ କୌଣସି ମତେ ଢୋକିଲା । ନ ଖାଇବାଟା ଅପମାନର କଥା ହେବ ।

ଜଗତସିଂହର କଷ୍ଟ ଦେଖି ପ୍ରତାପସିଂହ ମନେ ମନେ ହସିଲା । ପରେ କହିଲା, "ମା' ଖସା-ତେଲ ଟିକେ ଆଣ ।" କିନ୍ତୁ ତା'ର ମା' ତେଲ ବଦଳରେ ଖସା ନେଇ ଆସିଲେ ।

"ଆପଣ ଦେଖୁଛନ୍ତି କ'ଣ ? ତେଲ ଢାଳି ନିଅନ୍ତୁ ।" କହିଲା ପ୍ରତାପସିଂହ ଓ ଡାହାଣ-ହାତରେ ଖସାମକଚି ତେଲ ବାହାର କରି ଭାତରେ ଗୋଳାଇଲା ।

ଜଗତସିଂହ ମଧ୍ୟ ଭାବିଲା ଯେ ଖସାକୁ ମକଚି ତେଲ ବାହାର କରିବା ବହୁତ ସହଜ । ସେ କିଛି ଖସା ନେଇ ହାତରେ ମକଚିବାକୁ ଲାଗିଲା । ମକଚି ମକଚି ହାତ ବଥିଲା ହେଲେ ଟୋପାଏ ତେଲ ବାହାରିଲା ନାହିଁ ।

"କ'ଣ ହେଲା ? ତେଲ ବାହାରୁ ନାହିଁ ?" ଏକଥା କହି ପ୍ରତାପସିଂହ ତା'ର ବାମ ହାତରେ ଜଗତସିଂହର ଖସା ଧରିଥିବା ହାତକୁ ମକଚି-ଦେଲା । ଏଥର କିନ୍ତୁ ତେଲ ତ ବାହାରିଲା, ତା'ସହିତ ଜଗତସିଂହ ହାତରୁ ଟୋପ ଟୋପ ରକ୍ତବିନ୍ଦୁ ମଧ୍ୟ ବାହାରିଆସିଲା ।

ଏସବୁ ଦେଖି ଜଗତସିଂହର ପ୍ରାଣ ଶୁଖି-ଗଲା । ହେଲେ ପ୍ରକାଶ କରୁଛି ବା କିପରି ? ବହୁ କଷ୍ଟରେ ମୁହଁ ଖୋଲି ଶେଷରେ କହିଲା, "ବାସ୍ ସେତିକ ।"

ପ୍ରତାପସିଂହ ତା'ପରେ ଜଗତସିଂହର ହାତ ଛୁଡ଼ି ନିଜର ଖାଇବା ଖାଇଲା ।

ଜଗତସିଂହ ଉଠିପଡ଼ି କହିଲା, "ମୁଁ ବର୍ତ୍ତମାନ ଯାଉଛି ।" ତା'ପରେ ତା'ର ପୋଡ଼ାଜଳା କରୁଥିବା ହାତକୁ ଫୁଙ୍କି ଫୁଙ୍କି ସେଠାରୁ ଶୀଘ୍ର ପଳାଇଗଲା ଓ ରାଜଦରବାର ଆଡ଼େ ଚାଲିଲା ।






# ରାଜା ଉତ୍ତମ

ପୁରା କାଳର କଥା । ଉତ୍ତମ ନାମକ ଜଣେ ରାଜା ଥିଲେ । ତାଙ୍କ ପତ୍ନୀଙ୍କ ନାମ ଥିଲା ବହୁଳା । ବହୁଳା ସ୍ୱଭାବରେ ଥିଲେ ଉଦ୍ଧତା । ସେ ତାଙ୍କ ସ୍ୱାମୀ ଉତ୍ତମଙ୍କ କଥା ଶୁଣୁ ନ ଥିଲେ । ନିଜ ମନଇଚ୍ଛା କାମ କରୁଥିଲେ ।

ଉତ୍ତମ ତାଙ୍କ ସ୍ତ୍ରୀଙ୍କ ସ୍ୱଭାବ ସୁଧାରିବା ସକାଶେ ଅନେକ ଚେଷ୍ଟା କଲେ । କିନ୍ତୁ କୃତକାର୍ଯ୍ୟ ହେଲେ ନାହିଁ । ଶେଷକୁ ବିରକ୍ତ ହୋଇ ସେ ତାଙ୍କୁ ବଣ ଭିତରେ ଛାଡ଼ିଦେବାକୁ ନିଜ ସେବକମାନଙ୍କୁ ଆଦେଶ ଦେଲେ ।

ବଣ ଭିତରେ ବିଚରଣ କରୁଥିଲା ବେଳେ ପାଳପୋତକ ନାମକ ନାଗ ରାଣୀ ବହୁଳାଙ୍କୁ ଦେଖିଲା ଓ ନିଜ ଘରକୁ ନେଇଗଲା । ନାଗକନ୍ୟା ବହୁଳାଙ୍କୁ ଗୋଟିଏ ନିର୍ଜନ ଘରେ ରଖି ତାଙ୍କ ତତ୍ତ୍ୱାବଧାନ କରୁଥାଏ ।

କିଛିଦିନ ବିତିଗଲା । ଦିନେ ସୁଶର୍ମା ନାମକ ବ୍ରାହ୍ମଣ ଉତ୍ତମଙ୍କୁ ଭେଟି କହିଲା, "ମହାରାଜ, ମୋ ସ୍ତ୍ରୀକୁ କେହି ଜଣେ ନେଇଯାଇଛି । ଆପଣ ଯେପରି ହେଲେ ବି ତାକୁ ଆଣିଦିଅନ୍ତୁ ।"

"ତୁମ ସ୍ତ୍ରୀ ଦେଖିବାକୁ କିପରି ?" ରାଜା ଉତ୍ତମ ପଚାରିଲେ ।

"ମହାରାଜ, ମୋ ସ୍ତ୍ରୀ ଦେଖିବାକୁ କୁରୂପିଣୀ, ସେ ଆସି ବୁଢ଼ୀ ହେଲାଣି । ତା' ଚେହେରା ଭଲ ଅଖାଡ଼ୁଆ ଚେହେରା ସହଜରେ ଆଖିରେ ପଡ଼ିବ ନାହିଁ ।" ବ୍ରାହ୍ମଣ କହିଲା ।

"ବ୍ରାହ୍ମଣ ! ତୁମେ ଏପରି ସ୍ତ୍ରୀକୁ ହରାଇ ଏଡ଼େ ବ୍ୟସ୍ତ ହେଉଛ କାହିଁକି ?" ଉତ୍ତମ ପଚାରିଲେ ।

"ମହାରାଜ ! ସ୍ତ୍ରୀ ଯେପରି ହେଉନା କାହିଁକି, ତାକୁ ରକ୍ଷା କରିବା ସ୍ୱାମୀର କର୍ତ୍ତବ୍ୟ ।" ବ୍ରାହ୍ମଣ ବୁଝାଇଦେଲା ।

ରାଜା ଉତ୍ତମ ବ୍ରାହ୍ମଣର ସ୍ତ୍ରୀକୁ ଖୋଜି ବାହାର କରିବା ନିମନ୍ତେ ରଥରେ ବସି ବାହାରିପଡ଼ିଲେ । ବଣ ଭିତରେ ଥିଲେ ଜଣେ ତ୍ରିକାଳଜ୍ଞ ଋଷି । ତାଙ୍କ ଆଶ୍ରମକୁ ଯାଇ ସେ ଋଷିଙ୍କୁ

ମାର୍କଣ୍ଡେୟ ପୁରାଣର କାହାଣୀ

ଭେଟିବା ମାତ୍ରେ ଋଷି ତାଙ୍କ ପ୍ରଧାନ ଶିଷ୍ୟଙ୍କୁ ରାଜାଙ୍କ ସକାଶେ ଅର୍ଘ୍ୟ ଆଣିବାକୁ କହିଲେ ।

ଶିଷ୍ୟ ଟିକିଏ ଦୋଦୋପାଞ୍ଚ ହୋଇ ଗୁରୁଙ୍କୁ ପଚାରିଲେ, "ଆଜ୍ଞା, ଅର୍ଘ୍ୟ ସତରେ ଆଣିବି ?"

ଋଷି ଟିକିଏ ଚମକିତ ଦେଖାଗଲେ । ତା'ପରେ ଶିଷ୍ୟଙ୍କୁ କହିଲେ, "ଆଚ୍ଛା, ଥାଉ ।" ଏହା ପରେ ସେ ରାଜାଙ୍କୁ ତାଙ୍କ ଆସିବାର ହେତୁ ପଚାରିଲେ । ରାଜା ସବୁ କହିସାରି ପଚାରିଲେ, "ମହାତ୍ମା ! ଅର୍ଘ୍ୟ ନ ମିଳିବାର ହେତୁ କ'ଣ ?"

"ବାପା, ଯିଏ ସପତ୍ନୀକ ନ ଆସେ, ତାକୁ ଅର୍ଘ୍ୟ ମିଳିବା ବିଧି ନୁହେଁ । ଗୁଡ଼ । ତୁମେ ଯେଉଁ ବ୍ରାହ୍ମଣ-ପତ୍ନୀ କଥା ପଚାରୁଛ, ତାକୁ ବଳାକ ନାମକ ରାକ୍ଷସ ଧରି ନେଇଯାଇଛି ।" ଋଷି ଜଣାଇଲେ ।

ରାଜା ତତ୍‌କ୍ଷଣାତ୍ ଋଷିଙ୍କଠାରୁ ବିଦାୟ ନେଇ ବଳାକ ରାକ୍ଷସର ବାସସ୍ଥାନରେ ପହଞ୍ଚିଲେ ଓ ସେଠାରେ ବ୍ରାହ୍ମଣୀଙ୍କୁ ଦେଖିଲେ । ରାକ୍ଷସ ରାଜାଙ୍କୁ ସ୍ୱାଗତ ଜଣାଇଲେ ।

"ମହାରାଜ ! ଏ ରାକ୍ଷସ ମୋତେ ଧରିଆଣିଛି ସତ କିନ୍ତୁ ମୋ ସହ କୌଣସି ଦୁର୍ବ୍ୟବହାର କରିନାହିଁ । ବରଂ ମୋତେ ବହୁତ ସମ୍ମାନ ଦେଖାଇଛି । ବ୍ରାହ୍ମଣୀ ଜଣାଇଲା ।"

"ତୁମେ କି ଉଦ୍ଦେଶ୍ୟରେ ବ୍ରାହ୍ମଣୀଙ୍କୁ ଧରି-ଆଣିଲ ?" ରାଜା ରାକ୍ଷସକୁ ପଚାରିଲେ ।

"ମହାରାଜ ! ଏ ବ୍ରାହ୍ମଣୀର ସ୍ୱାମୀ ରାକ୍ଷସ-କୁଳର ଅନିଷ୍ଟ କରିବା ନିମନ୍ତେ ଏକ ଯଜ୍ଞର ଅନୁଷ୍ଠାନ କରିବାକୁ ଯାଉଥିଲା । କିନ୍ତୁ ସ୍ତ୍ରୀ ବିନା ସେ ଯଜ୍ଞ କାର୍ଯ୍ୟକାରୀ ହେବ ନାହିଁ ଜାଣି ମୁଁ ତା' ସ୍ତ୍ରୀକୁ ଧରିନେଇଆସିଲି ।" ରାକ୍ଷସ ଉତ୍ତର ଦେଲା । ସେ ବ୍ରାହ୍ମଣୀକୁ ପଠାଇଦେଲା ।

ରାଜା ବ୍ରାହ୍ମଣୀ ସହ ପୁଣି ତ୍ରିକାଳଜ୍ଞ ଋଷିଙ୍କ ଆଶ୍ରମକୁ ଫେରିଆସି ବହୁଳା କେଉଁଠାରେ ଥାଇପାରନ୍ତି ବୋଲି ପଚାରିଲେ ।

"ମହାରାଜ ! ଆପଣଙ୍କ ସ୍ତ୍ରୀଙ୍କୁ ପାଳପୋତକ ନାମକ ନାଗ ନେଇଯାଇଛି । ନାଗକନ୍ୟା ତାଙ୍କୁ ରକ୍ଷା କରୁଛି ।" ଋଷି ଉତ୍ତର ଦେଲେ ।

ରାଜା ବଳାକ ରାକ୍ଷସକୁ ନାଗପୁରକୁ ପଠାଇ ରାଣୀ ବହୁଳାଙ୍କୁ ଅଣାଇଲେ ।

ରାଣୀ ତେଣିକି ଅବଶ୍ୟ ରାଜାଙ୍କ ପ୍ରତି ଆଉ କୌଣସି ଦୁର୍ବ୍ୟବହାର କଲେ ନାହିଁ ।



ଭରତ-କାହାଣୀ

# ପ୍ରାର୍ଥନାର ମହିମା



ଅନେକ ପୂର୍ବ କାଳର କଥା । କୋଶଳ ରାଜ୍ୟ ଉପରେ ବଜୁତ କରୁଥିଲେ ରାଜା ଅମ୍ବରୀଷ । ଥରେ ରାଜ୍ୟରେ ମରୁଡ଼ି ପଡ଼ିଲା । ନଦୀ, କୂପ ଓ ପୋଖରୀମାନ ଶୁଖିଗଲେ । ଶସ୍ୟ ଉଧାଇଲା ନାହିଁ ।



ରାଜା ଚିନ୍ତିତ ହେଲେ । ମନ୍ତ୍ରୀ ଓ ପୁରୋହିତ ତାଙ୍କୁ ବର୍ଷାର ଆବାହନ କରିପାରିଲା ଭଳି ଏକ ନିର୍ଦ୍ଦିଷ୍ଟ ଯଜ୍ଞ କରିବାକୁ ପରାମର୍ଶ ଦେଲେ । ସେ ଯଜ୍ଞ ଅତି ସାବଧାନରେ ଅନୁଷ୍ଠିତ ହେବା କଥା ।



ସେ ଯଜ୍ଞ ଉପଲକ୍ଷେ ଅଶ୍ୱଟିଏ ବଳି ପଡ଼ିବା କଥା । ସେପାଇଁ ସୁଲକ୍ଷଣ ଅଶ୍ୱ ସଂଗୃହିତ ହେଲା । ତାକୁ ପୁଷ୍ପସଜ୍ଜିତ କରି ଯଥା ସମୟରେ ବଳିଦାନ ନିମନ୍ତେ ପ୍ରସ୍ତୁତ କରି ରଖା ହେଲା ।




କେହି କେହି ଦେବତା . ଭାବିଲେ କି ଅମ୍ବରୀଷ ସ୍ୱର୍ଗର ରାଜା ହେବା ମାନସରେ ସେ ଯଜ୍ଞାନୁଷ୍ଠାନ କରୁଛନ୍ତି । ସେମାନେ ଯଜ୍ଞ ନ କରାଇଦେବା ଉଦ୍ଦେଶ୍ୟରେ ଅଶ୍ୱ ଚୋରାଇନେଲେ ।



ଅଶ୍ୱ ଚୋରି ହୋଇଯିବା କଥା ଶୁଣି ରାଜା ଓ ମନ୍ତ୍ରୀମାନେ ମର୍ମାହତ ହେଲେ । ରାଜାଙ୍କ ସୈନ୍ୟଦଳ ଚାରିଆଡ଼େ ଅଶ୍ୱକୁ ଖୋଜି ବୁଲିଲେ । ବଣ, ପର୍ବତ, ସମସ୍ତଙ୍କ ଘୋଡ଼ାଶାଳ — କିଛି ବାଦ୍ ପଡ଼ିଲା ନାହିଁ ।




କିନ୍ତୁ ଅଶ୍ୱର ପତ୍ତ ମିଳିଲା ନାହିଁ । ରାଜାଙ୍କୁ ପୁରୋହିତମାନେ କହିଲେ କି ଅଶ୍ୱ ବଦଳରେ ଯଦି କେତେକ ବିଶେଷ ପବିତ୍ର ଲକ୍ଷଣଯୁକ୍ତ ବ୍ରାହ୍ମଣ ବାଳକଟିଏ ମିଳିବ, ତେବେ କାମ ଚଳିବ ।

ସେଭଳି ଲକ୍ଷଣଯୁକ୍ତ ବ୍ରାହ୍ମଣ ବାଳକ ମିଳିବା ସହଜ ନ ଥିଲା । ପୁଣି ମିଳିଲେ ବି ଯଜ୍ଞରେ ଅର୍ପିତ ହେବା ନିମନ୍ତେ କାହିଁ ମିଳିବ ? ଅନେକ ସନ୍ଧାନ ପରେ ଜଣାଗଲା କି ଋଚକ ନାମକ ଋଷିଙ୍କର ତିନିପୁଅଯାକ ସେଭଳି ଲକ୍ଷଣଯୁକ୍ତ ।





ରାଜା ଋଚକଙ୍କୁ ଭେଟିଲେ । ଋଚକ ତାଙ୍କ ବଡ଼ ପୁଅକୁ ଅତି ସ୍ନେହ କରୁଥିବାରୁ ତାକୁ ଛାଡ଼ିଲେ ନାହିଁ । ଋଷିପତ୍ନୀ ସାନ ପୁଅକୁ ଛାଡ଼ିବାକୁ ନାସ୍ତି କଲେ । ମଧ୍ୟମ ପୁତ୍ର ଶୁନଃଶେପ ଆପଣାଛାଏଁ ଯଜ୍ଞ କର୍ମରେ ଲାଗିବାକୁ ବାହାରି ଆସିଲେ ।

ଶୁନଃଶେପକୁ ଧରି ରାଜା ଖୁସୀ ମନରେ ନଅର ଅଭିମୁଖେ ଚାଲିଲେ । ବାଟରେ ଋଷି ବିଶ୍ୱାମିତ୍ରଙ୍କ ଆଶ୍ରମ ପଡ଼ିଲା । ବିଶ୍ୱାମିତ୍ର ଶୁନଃଶେପଙ୍କ ମାମୁଁ । ଶୁନଃଶେପ ତାଙ୍କୁ ଭେଟିବାକୁ ଗଲେ ।





ବାଳକ ପାଖରୁ ସବୁ ଶୁଣି ବିଶ୍ୱାମିତ୍ରଙ୍କ ହୃଦୟ ବିଗଳିତ ହେଲା । ସେ ଭଣଜାକୁ ଗୋଟିଏ ବେଦ ମନ୍ତ୍ର ଶିଖାଇଦେଲେ ଓ କହିଲେ, "ଯଦି ଗମ୍ଭୀର ଭକ୍ତି ସହ ଏହି ମନ୍ତ୍ର ପଢ଼ି ଭଗବାନଙ୍କୁ ପ୍ରାର୍ଥନା କରିବୁ, ତେବେ ତୋର ପ୍ରାଣରକ୍ଷା ହୋଇ-ପାରିବ ।"

ଶୁନଃଶେପ ନଅରରେ ପହଞ୍ଚିବା ପରେ ତାଙ୍କୁ ସ୍ନାନ କରାଇ ଯଜ୍ଞକୁଣ୍ଡ ପାଖକୁ ନିଆଗଲା । ସେତେବେଳେ ସେ ଗମ୍ଭୀର ଭକ୍ତିପରିପ୍ଳୁତ ଚିତ୍ତରେ ମନ୍ତ୍ରଟି ଆବୃତ୍ତି [illegible] [illegible] । [illegible] ତୃପ୍ତ ହୋଇ ତାହା ଶୁଣିଲେ ।





ଦେଖୁଁ ଦେଖୁଁ ଆକାଶବ୍ୟାପୀ ଘନମେଘ ଘୋଟିଆସିଲା । ଯଜ୍ଞ ଭିତରୁ ଆବିର୍ଭୂତ ହେଲେ ଇନ୍ଦ୍ର । "ତୁମ ପ୍ରାଣଦାନ ଦ୍ୱାରା ଯେଉଁ ସିଦ୍ଧି ହୋଇଥା'ନ୍ତା, ତୁମ ପ୍ରାର୍ଥନା ଦ୍ୱାରା ତାହା ହୋଇଛି ।" ସେ କହିଲେ । ବର୍ଷା ହେଲା । ଶୁନଃଶେପ ଆନନ୍ଦିତ ହୋଇ ଫେରିଗଲେ ।



# ଦେବଯାନୀ

କୌଣସି ବ୍ୟକ୍ତି ଗଭୀର ତପସ୍ୟାନିବିଷ୍ଟ ହେବାର ଦେଖିଲେ ଇନ୍ଦ୍ର ଆତଙ୍କିତ ହେଉଥିଲେ । କାଳେ ତପଃଶକ୍ତି ଦ୍ୱାରା କେହି ତାଙ୍କ ଇନ୍ଦ୍ରତ୍ୱ ଛଡ଼ାଇନେବ, ଏହାହିଁ ଥିଲା ତାଙ୍କ ଭୟ ।

ଶୁକ୍ର ତପସ୍ୟାମଗ୍ନ ଥିଲା ବେଳେ ତାଙ୍କ ତପସ୍ୟା ଭଙ୍ଗ କରିବା ନିମନ୍ତେ ଇନ୍ଦ୍ର ଜୟନ୍ତୀ ନାମକ କନ୍ୟାଙ୍କୁ ପ୍ରେରଣ କରିଥିଲେ । ଶୁକ୍ର ଅବଶ୍ୟ ତାଙ୍କ ତପସ୍ୟାରୁ ଟଳିଲେ ନାହିଁ । ସେ ବ୍ରହ୍ମାଙ୍କ ଦର୍ଶନ ପାଇଲେ ଓ ବର ପାଇଲେ । କିନ୍ତୁ ତା'ପରେ ସେ ଜୟନ୍ତୀଙ୍କୁ ବିବାହ କଲେ । ଯଥା ସମୟରେ ତାଙ୍କର କନ୍ୟାଟିଏ ହେଲା । ତା'ର ନାମ ଦେବଯାନୀ ।

ଶୁକ୍ର ମୃତସଞ୍ଜୀବନୀ ବିଦ୍ୟା ଜାଣିଥିଲେ । ସେ ଥିଲେ ଦାନବକୁଳର ଗୁରୁ । ତାଙ୍କଠାରୁ ସେ ବିଦ୍ୟା ହାସଲ କରିନେବା ନିମନ୍ତେ ଦେବତାମାନେ ଯୁବକ କଚଙ୍କୁ ପଠାଇଥିଲେ । କଚ ଶୁକ୍ରଙ୍କ ପରିଚର୍ଯ୍ୟା କରୁଥା'ନ୍ତି । କିନ୍ତୁ କଚଙ୍କ ଉଦ୍ଦେଶ୍ୟ ଜାଣି ଦାନବମାନେ ତାଙ୍କୁ ବାରମ୍ବାର ମାରିପକାଉଥା'ନ୍ତି । ଦେବଯାନୀଙ୍କ ଅନୁରୋଧରେ ଶୁକ୍ର ତାଙ୍କୁ ଜୀବନ୍ୟାସ ଦେଉଥା'ନ୍ତି ।

କଚ ଯଥା ସମୟରେ ମୃତସଞ୍ଜୀବନୀ ବିଦ୍ୟା ଶିଖିନେଇ ଘରକୁ ଯିବାକୁ ବାହାରିଲେ । ସେତେବେଳେ ଦେବଯାନୀ ପ୍ରସ୍ତାବ ଦେଲେ କି ସେ ତାଙ୍କୁ ବିବାହ କରନ୍ତୁ । କିନ୍ତୁ ଗୁରୁକନ୍ୟା ଭଗ୍ନୀ ସ୍ୱରୂପା କହି କଚ ସେ ପ୍ରସ୍ତାବ ଏଡ଼ାଇ-ଦେଇ ଚାଲିଗଲେ ।

ଶୁକ୍ର ରହୁଥିଲେ ବୃଷପର୍ବ ନାମକ ଦାନବ ରାଜାଙ୍କ ନଅରରେ । ବୃଷପର୍ବଙ୍କର ଶର୍ମିଷ୍ଠା ନାମରେ କନ୍ୟା ଥିଲେ । ଶର୍ମିଷ୍ଠାଙ୍କ ସହ ହେଲା ଦେବଯାନୀଙ୍କ ବନ୍ଧୁତା ।

ଦିନେ ଶର୍ମିଷ୍ଠା ଦେବଯାନୀ ସଖୀମାନଙ୍କ ଗହଣରେ ଏକ ସରୋବରକୁ ସ୍ନାନ କରିବାକୁ ଯାଇଥା'ନ୍ତି । ହଠାତ୍ ଆସିଲା ଝଡ଼ । ଶର୍ମିଷ୍ଠା

ସରୋବରରୁ ବାହାରି ଆସି ତରବରରେ ଭୁଲ କ୍ରମେ ନିଜ ଲୁଗା ନ ପିନ୍ଧି ଦେବଯାନୀଙ୍କ ଲୁଗା ପିନ୍ଧିପକାଇଲେ ।

ଦେବଯାନୀ ସରୋବରରୁ ଉଠିଆସି କହିଲେ, "ଶର୍ମିଷ୍ଠା ! ତୁମେ କଲ କ'ଣ ! ମୁଁ ବ୍ରାହ୍ମଣ-କନ୍ୟା । ମୋ ପିତା ପୁଣି ତୁମ କୁଳଗୁରୁ । ତୁମେ ମୋ ଲୁଗା ପିନ୍ଧିପକାଇଲ କିପରି ?"

କୁପିତା ହୋଇ ଶର୍ମିଷ୍ଠା କହିଲେ, "ତୁମ ପିତା ମୋ ପିତାଙ୍କ କର୍ମଚାରୀ ମାତ୍ର । ଏତେ ବଡ଼ପଣ କାହିଁକି ?" ଏହାପରେ ସେ ଦେବଯାନୀଙ୍କୁ ଗୋଟାଏ କୂଅ ଭିତରକୁ ଠେଲିଦେଇ ସଖୀମାନଙ୍କୁ ଧରି ଚାଲିଗଲେ ।

ବଣ ଭିତରକୁ ଶିକାର କରିବାକୁ ଆସିଥା'ନ୍ତି ରାଜା ଯଯାତି । ସେ ଦେବଯାନୀଙ୍କ କ୍ରନ୍ଦନ ଶୁଣି ତାଙ୍କ ହାତ ଧରି ତାଙ୍କୁ କୂଅ ଭିତରୁ ବାହାର କରି ଆଣିଲେ । ସେତିକିବେଳେ ଦେବଯାନୀଙ୍କୁ ଖୋଜିବାକୁ ଜଣେ ପରିଚାରିକା ଆସି ପହଞ୍ଚିଲା । ଦେବଯାନୀ କିନ୍ତୁ ବୃଷପର୍ବଙ୍କ ନଅରକୁ ଯିବାକୁ ନାସ୍ତି କରିଦେଲେ । ଶୁକ୍ର ସବୁ ଶୁଣି ନଅର ଛାଡ଼ି ଚାଲିଯିବାକୁ ବାହାରନ୍ତେ ବୃଷପର୍ବ ନିଜ କନ୍ୟାଙ୍କୁ ଶାସ୍ତି ଦେଲେ । ଶର୍ମିଷ୍ଠାଙ୍କୁ ଦେବଯାନୀଙ୍କର ଦାସୀ ହେବାକୁ ପଡ଼ିଲା ।

ଯଯାତି ଦେବଯାନୀଙ୍କ ହାତ ଧରି ତାଙ୍କୁ କୂଅରୁ ଉଠାଇଥିବାରୁ ଦେବଯାନୀ ଯୁକ୍ତି ଦେଲେ କି ଯଯାତି ତାଙ୍କ ପାଣିଗ୍ରହଣ କରିଛନ୍ତି । ଅତଏବ ସେ ତାଙ୍କ ସ୍ୱାମୀ । ଶେଷକୁ ଦୁହିଁଙ୍କ ବିବାହ ହେଲା ।

ଦେବଯାନୀ ଯଯାତିଙ୍କ ଘରକୁ ଗଲା ବେଳେ ସାଥିରେ ଦାସୀ ରୂପେ ଗଲେ ଶର୍ମିଷ୍ଠା ।

କ୍ରମେ ଯଯାତି ଶର୍ମିଷ୍ଠାଙ୍କ ପ୍ରତି ଅନୁରକ୍ତ ହେଲେ । ଯେତେବେଳେ ଦେବଯାନୀ ଏକଥା ଜାଣିଲେ, ସେତେବେଳେ ସେ ଭୀଷଣ ରାଗିଗଲେ ଓ ନିଜ ପିତାଙ୍କ ପାଖରେ ସ୍ୱାମୀଙ୍କ ବିରୁଦ୍ଧରେ ଅଭିଯୋଗ କଲେ ।

ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପ ଫଳରେ ଯଯାତିଙ୍କୁ ଜରା ଗ୍ରାସ କଲା । ସେ ଯୌବନର ସମସ୍ତ ସୁଖରୁ ବଞ୍ଚିତ ହେଲେ । ଅବଶ୍ୟ ତାଙ୍କର ଜଣେ ପୁଅ ସାମୟିକ ଭାବରେ ତାଙ୍କ ଜରା ଗ୍ରହଣ କଲେ ।



# ଦୁଇ ଭଦ୍ରଲୋକ

ନରସିଂହପୁରରେ ଥରେ ଭୀଷଣ ଚୋରି ହେବାକୁ ଲାଗିଲା । ଏକ ସମୟରେ ଦୁଇ ଅଲଗା ଅଲଗା ସ୍ଥାନରୁ ଚୋରି ହେଉଥିବାର ଦେଖି ରାଜାଙ୍କର ସନ୍ଦେହ ହେଲା କି ଚୋର ଜଣେ ନୁହେଁ, ଦୁଇଜଣ ।

କିନ୍ତୁ ସେ ନିଜ ସନ୍ଦେହ ପ୍ରକାଶ ନ କରି ଘୋଷଣା କଲେ, "ସହରରେ ଗୋଟାଏ ଚୋର ମାତିଛି । ଯିଏ ତାକୁ ଚିହ୍ନାଇଦେଇ ପାରିବ, ସେ ଦଶହଜାର ଟଙ୍କା ପୁରସ୍କାର ପାଇବ ।"

ଦୁଇ ଚୋର ଥିଲେ ଓସ୍ତାଦ । ଜଣକ ନାମ ଗଜସିଂ, ଅନ୍ୟଟିର ନାମ ଶେରସିଂ । ଦୁହେଁ ଦୁହିଁଙ୍କୁ ଈର୍ଷା କରୁଥିଲେ । ଘୋଷଣା ଶୁଣି ଗଜସିଂ ଦରବାରକୁ ଗଲା ଓ ଖବର ପଠାଇଲା କି ଜଣେ ଭଦ୍ରଲୋକ ରାଜାଙ୍କୁ ଚୋରର ସନ୍ଧାନ ଦେବାକୁ ଆସିଛନ୍ତି । ସେତିକିବେଳେ ଶେରସିଂ ବି ପହଞ୍ଚି ଏକା ଖବର ଦେଲା । ରାଜା ଦୁହିଁଙ୍କୁ ଏକ ସମୟରେ ଭିତରକୁ ଅଣାଇବା ମାତ୍ରେ ଦୁହେଁ ପରସ୍ପରକୁ ଚୋର ବୋଲି ଚିହ୍ନାଇଦେଲେ । ଉଭୟେ ଧରା ହେଲେ । ପୁରସ୍କାର ରାଜକୋଷରେହିଁ ରହିଲା ।





# ଡକାଏତ

ରଘୁବାବୁଙ୍କ ଘର ସହରଠାରୁ ଦଶମାଇଲ ଦୂର ଗୋଟିଏ ଗାଁରେ । ତାଙ୍କ ଘରେ କୌଣସି ଉତ୍ସବ ହେବାର ଥାଏ । ସେଥିପାଇଁ ତାଙ୍କ ବନ୍ଧୁ ବାସୁବାବୁ ସହରକୁ ଗୋଟିଏ ଘୋଡ଼ାଗାଡ଼ି ଭଡ଼ା କରି ଆସୁଥାନ୍ତି ।

ସହର ଓ ଗାଁ ମଝିରେ ଥାଏ ଗୋଟାଏ ଛୋଟ ଜଙ୍ଗଲ । ସେହି ଜଙ୍ଗଲରେ କିଛିଦିନ ଆଗରୁ ଜଣେ ଚୋର ରଘୁବାବୁଙ୍କର ସବୁ ଲୁଟିନେଇ-ଥିଲା । ଘଟଣାଟି ତାଙ୍କଠୁ ବାସୁବାବୁ ଶୁଣିଥିଲେ ।

ଘଟଣାଟି ହେଲା : ରଘୁବାବୁ ଥରେ କୌଣସି କାମ ସାରି ସହରରୁ ଫେରୁ ଫେରୁ ସନ୍ଧ୍ୟା ହୋଇଯାଇଥିଲା । ସେ ଗୋଟିଏ ଘୋଡ଼ାଗାଡ଼ିରେ ଫେରୁଥାନ୍ତି । ଜଙ୍ଗଲ ମଝିରେ ରାସ୍ତା ଉପରେ ଗୋଟିଏ ଗଛର ଡାଳ ପଡ଼ିଥିବାରୁ ହଠାତ୍ ଗାଡ଼ି ବନ୍ଦ ହୋଇଗଲା । ଠିକ୍ ସେତିକିବେଳେ ହଠାତ୍ ଗଛ ଉହାଡ଼ରୁ ଜଣେ ଗୁଣ୍ଡା ପରି ଲୋକ ବାହାରିଆସି ତା'ହାତର ଛୁରୀ ରଘୁବାବୁଙ୍କ ମୁଣ୍ଡରେ ରଖି କହିଲା, "ତୋ ପାଖରେ ଯାହା କିଛି ଅଛି ମୋତେ ଦେଇଦେ ।" ତା'ପରେ ରଘୁବାବୁଙ୍କର ସବୁ ଟଙ୍କା, ଜିନିଷପତ୍ର ନେଇ ଗାଡ଼ିବାଲାଠୁ ମଧ୍ୟ ସବୁ ନେଇଯାଇ ସେ ଜଙ୍ଗଲ ଭିତରକୁ ଚାଲିଗଲା ।

ଗାଡ଼ିବାଲା ମଥା ପିଟି କହିଲା, "ମୁଁ ମୂଳରୁ କହୁଛି ଏ ଅନ୍ଧାର ରାତିରେ ଜଙ୍ଗଲରେ ଯିବା ନାହିଁ । ହାୟ, ମୋ ଝିଅର ବାହାଘର ପାଇଁ ଯେଉଁ ପାଞ୍ଚଶ ଟଙ୍କା ଜମା କରିଥିଲି ତାକୁହିଁ ଚୋର ଲୁଟିନେଲା ।"

ରଘୁବାବୁ ଘରେ ପହଞ୍ଚି ଗାଡ଼ିବାଲା ପ୍ରତି ଦୟା ଦେଖାଇ ତା'ର ପାଞ୍ଚଶ ଟଙ୍କା ଦେଇ-ଦେଲେ । ରାତିରେ ସେଠାରେ ସେ ରହି

ଦୀନେଶ

ସକାଳେ ନିଜ ଘରକୁ ଫେରିଗଲା ।

ବାସୁବାବୁ ଗାଡ଼ିରେ ବସି ଅନ୍ଧାରରେ ଗଲା-ବେଳେ ସେଇ ଘଟଣା କଥା ଭାବୁଥାନ୍ତି । ସେତିକିବେଳେ ଗାଡ଼ି ଗୋଟାଏ ମୋଡ଼ରେ ବୁଲିଲା । ଦେଖାଗଲା ସେଠାରେ ମଧ୍ୟ ଗଛ-ଡାଳଟାଏ ପଡି ରାସ୍ତା ବନ୍ଦ ହୋଇଛି । ପୂର୍ବପରି ଗୋଟିଏ ଗଛ ଉହାଡ଼ରୁ ବାହାରିଆସିଲା ଛୁରି ଧରି ଜଣେ ଚୋର ଆଉ ସବୁ ଟଙ୍କା ଦୁଇ-ଜଣଙ୍କଠୁ ଲୁଟିନେଲା । ଯିବାବେଳକୁ କହିଲା, "ତୋ ହାତରେ ସେ ପୁଟୁଳାଟି କ'ଣ ?"

"ଏଥିରେ କିଛି ମିଠାଇ ଅଛି । ପିଲାଙ୍କ ପାଇଁ ନେଇ ଯାଉଛି ।" ବାସୁବାବୁ କହିଲେ ।

"ଓହୋ, ମୋତେ ଖୁବ୍ ଭୋକ ଲାଗୁଛି । ଭଲ ହେଲା ।" କହି ସେ ପୁଟୁଳାଟି ଛଡ଼ାଇନେଇ ଚାଲିଗଲା ।

ଚୋର ଯିବା ପରେ ଗାଡ଼ିବାଲା ମଥା ପିଟି କହିଲା, "ହାୟ, ମୋ ଝିଅ ବାହାଘର ପାଇଁ ରଖିଥିବା ପାଞ୍ଚଶ ଟଙ୍କା ଚୋର ନେଇଗଲା ।" ତା'ପରେ ଗାଡ଼ିବାଲା ଡାଳଟା ଟାଣି ବାହାର କରି ଗାଡ଼ି ଚଳାଇବାକୁ ଆରମ୍ଭ କଲା ।

ବାସୁବାବୁ ଗମ୍ଭୀର ହୋଇ କହିଲେ, "ଗାଡ଼ି ବନ୍ଦ କର ।"

"କାହିଁକି ? କ'ଣ ଆଉ ଜଣେ ଚୋର ହାତରେ ପଡ଼ିବାର ଇଚ୍ଛା ଅଛି ?" ଗାଡ଼ିବାଲା



ଧମକ୍ ଦେଇ ଉଲଟା ପଚାରିଲା ।

"ହେଉ ଆସୁ । ମୋଠାରୁ ଲୁଟିବା ପରେ ଆଉ କିଛି ତ ଅଛି । କିନ୍ତୁ ଚୋର ସେସବୁ ନେଇ କୁଆଡ଼େ ବି ଯିବ ନାହିଁ । ଶୀଘ୍ର ପୁଣି ଆମ ପାଖକୁ ଚାଲିଆସିବ ।" ବାସୁବାବୁ କହିଲେ ।

"କିପରି ?" ଗାଡ଼ିବାଲା ପଚାରିଲା ।

ବାସୁବାବୁ ହସିହସି କହିଲେ, "ସେ ମିଠାଇ ପିଲାଙ୍କ ପାଇଁ ନୁହେଁ । ମୂଷାମାନଙ୍କ ପାଇଁ ନେଉଥିଲି । ଶୁଣିଥିଲି ମୋର ବନ୍ଧୁଙ୍କ ଘରେ ବହୁତ ମୂଷା ତେଣୁ ସହରରୁ ଭଲ ଔଷଧ ଆଣି ସେଥିରେ ମିଶାଇ ଆଣିଥିଲି । ଚୋର ତାକୁ ଖାଇ ଶୀଘ୍ର ମରିଯିବ । ଆମେ ମଧ୍ୟ ଆମ ଟଙ୍କା

ବିନା କ୍ଲେଶରେ ଫେରିପାଇବା ।"

ଏ କଥା ଶୁଣି ଗାଡ଼ିବାଲାର ମୁହଁ ଫିକା ପଡ଼ିଗଲା । ସେ ଥରି ଥରି ବଡ଼ପାଟିରେ ଚିତ୍କାର କରି କହିଲା, "ପୁଅ, ମିଠାଇ ଖା'ନା !" କହି କହି ସେ ଗାଡ଼ିରୁ ଡେଇଁପଡ଼ିଲା ।

ବାସୁବାବୁ ମଧ୍ୟ ଗାଡ଼ିରୁ ଓହ୍ଲାଇଲେ ଓ ଗମ୍ଭୀର ହୋଇ କହିଲେ, "ଆଚ୍ଛା, ଏଥିରେ ତୋର ମଧ୍ୟ ହାତ ଅଛି ?"

"ଆଜ୍ଞା, ଲୋଭରେ ପଡ଼ି ଆମେ ଏପରି ଚୋରି କରୁ । ମୋ ପୁଅ ଏବେ ମରିଯିବ, କ'ଣ କରିବି ?" ଗାଡ଼ିବାଲା ବ୍ୟସ୍ତ ହୋଇ କହିଲା ।

ତା'ପରେ ଦୁହେଁ ଅଳ୍ପ ଦୂରରେ ଥିବା ଏକ କୁଟୀରରେ ପହଞ୍ଚିଲେ । ଗାଡ଼ିବାଲା ଶୀଘ୍ର ଶୀଘ୍ର କବାଟ ଖୋଲି ଗୋଟିଏ ଘରେ ପଶିଗଲା । ପଛେ ପଛେ ବାସୁବାବୁ ମଧ୍ୟ ଭିତରେ ପଶିଲେ ।

ସେତେବେଳକୁ ପୁଅ ଅଧା ମିଠେଇ ଶେଷ କରିସାରିଲାଣି । ଗାଡ଼ିବାଲା କାନ୍ଦି କାନ୍ଦି କହିଲା, "ହେ ପୁଅ, ସେଥିରେ ମୂଷାମରା ଔଷଧ ପଡ଼ିଛି । ତୁ ଖାଇଦେଲୁ ?"

"କାନ୍ଦିଲେ ବିଷ ଛାଡ଼ିବ ନାହିଁ । ଚାଲ ମୋର ବନ୍ଧୁଙ୍କ ଘରକୁ । ବୈଦ୍ୟ ଏହାର କିଛି ପ୍ରତିକାର କରିବେ ।" ବାସୁବାବୁ କହିଲେ ।

ବିଷ କଥା ଶୁଣି ଗାଡ଼ିବାଲାର ପୁଅ ପୁରା ଝାଳରେ ବୁଡ଼ିଗଲା । ତା' ମୁଣ୍ଡ ବୁଲାଇଲା ଓ ପେଟ କାଟିଲା । ତା'ପରେ ତିନିଜଣ ଗାଡ଼ିରେ ବସି ରଘୁବାବୁଙ୍କ ଘରେ ପହଞ୍ଚିଲେ । ବାସୁବାବୁ ବାପପୁଅଙ୍କୁ ଗୋଟିଏ ଘରେ ବସାଇ କହିଲେ, "ତୁମେ ଦୁହେଁ ଏଇଠି ବସିଥାଅ । ମୁଁ ଯାଇ ବୈଦ୍ୟଙ୍କୁ ଡାକିଆଣୁଛି ।" ଏ କଥା କହି ସେ ଭିତରକୁ ଯାଇ ସବୁ କଥା ରଘୁବାବୁଙ୍କୁ ଶୁଣାଇଲେ ।

ବୈଦ୍ୟଙ୍କୁ ଅପେକ୍ଷା କରି ବସିଥିବା ବାପା-ପୁଅଙ୍କ ଖବର ପାଇ ସିପାହୀମାନେ ସେଠାରେ ପହଞ୍ଚିଲେ ଓ ତାଙ୍କୁ ଧରିନେଲେ । ସେମାନେ ଯିବାବେଳେ ବାସୁବାବୁ କହିଲେ "ମିଠେଇରେ କିଛି ବିଷ ନାହିଁ । ହେଲେ ତୁମମାନଙ୍କ ରୋଗ ପାଇଁ ଔଷଧ ଦେବାବାଲା ବୈଦ୍ୟ ହେଉଛନ୍ତି ଏଇମାନେ ।"



# ପରୀକ୍ଷା

ଜଣେ ବ୍ୟବସାୟୀଙ୍କର ଦୁଇ ପୁଅ ଥିଲେ । ତାଙ୍କ ଅନ୍ତେ କେଉଁ ପୁଅ ଘର ବାଡ଼ ଦେଖାଶୁଣା କରିବ, ସେ ଏହା ସ୍ଥିର କରିବା ନିମନ୍ତେ ଥରେ ଦୁଇ ପୁଅ ହାତରେ ଦୁଇଖଣ୍ଡି ହୀରା ଦେଇ କହିଲେ, "ତୁମ୍ଭେମାନେ ଅନ୍ୟ ସହରକୁ ଯାଇ ଏହାକୁ ଅସଲ ହୀରା ବୋଲି କହି ବିକି କରି ଆସ ।"

ଦୁଇଦିନ ପରେ ବଡ଼ଭାଇ ଫେରି ଆସି କହିଲା, "ଖରିଦ୍ଦାରମାନେ ଏହାକୁ ନକଲି ହୀରା ବୋଲି କହିଲେ । ଶେଷକୁ ଦଶଟଙ୍କାରେ ବିକିଲି ।

ଦ୍ୱିତୀୟ ପୁତ୍ର ଫେରି ଆସି କହିଲା, "ବାପା, ତୁମ୍ଭେ ନିଶ୍ଚେ ଭୁଲରେ ନକଲି ହୀରାଟାଏ ଦେଇ-ଥିଲ । କିନ୍ତୁ ମୁଁ ତାକୁ ସତ ହୀରା କହି ହଜାରେ ଟଙ୍କାରେ ବିକିଦେଲି ।"

ଏଥର ବ୍ୟବସାୟୀ ଦୁଇ ପୁଅଙ୍କୁ ଦୁଇଖଣ୍ଡି ସତ ହୀରା ଦେଇ କହିଲେ, "ତୁମ୍ଭେମାନେ ଯେଉଁ ହୀରା ବିକି ଆସିଲ, ତାହା ସତ ହୀରା । ଏହା ନକଲି । ଯାଅ, କିଣିବାର ଚେଷ୍ଟା କର ।"

ବଡ଼ ପୁଅ ଫେରି ଆସି କହିଲା, "ବାପା, ମୁଁ ସେ ପୂର୍ବର ସତ ହୀରା ସହ ଏଥରର ହୀରା କୌଶଳରେ ବଦଳ କରି ପୂର୍ବଟି ନେଇଆସିଛି ।" ଦ୍ୱିତୀୟ ପୁଅ କହିଲା "ବାପା, ଏଥରର ହୀରା ସତ ହୀରା । ଦଶହଜାର ଟଙ୍କାରେ ବିକିଲି । ତେବେ କାଲେ ପୂର୍ବର ହୀରା ସତ ହୀରା ହୋଇଥିବ, ସେଥିପାଇଁ ଶହେ ଟଙ୍କା ଅଧିକା ଦେଇ ତାକୁ ଫେରାଇ ଆଣିଛି ।"

ବ୍ୟବସାୟୀ ଦ୍ୱିତୀୟ ପୁତ୍ର ଉପରେ ବ୍ୟବସାୟ ଭାର ନ୍ୟସ୍ତ କଲେ ।





# ଘରେ ଓ ବାହାରେ

ଗୋବିନ୍ଦ ଜଣେ ପଣ୍ଡିତଙ୍କ ଘରେ ଚାକର ଥାଏ । କିନ୍ତୁ ପାଠ ପଢ଼ିବା ସକାଶେ ତା'ର ଥା'ଏ ଗଭୀର ଆଗ୍ରହ । ଯେତେବେଳେ ପଣ୍ଡିତେ ତାଙ୍କ ଛାତ୍ରମାନଙ୍କୁ ପଢ଼ାଉଥାନ୍ତି, ସେ ଅନ୍ତରାଳରେ ଠିଆ ହୋଇ ସେସବୁ ଶୁଣେ ।

ସେଥି ସକାଶେ ସେ ଅବଶ୍ୟ କାମଦାମରେ ତ୍ରୁଟି କରେ ଏବଂ ମଧ୍ୟେ ମଧ୍ୟେ ପଣ୍ଡିତଙ୍କଠାରୁ ଗାଳି ଶୁଣେ । କିନ୍ତୁ ନିଜ ଆଗ୍ରହ ଛାଡ଼ିପାରେ ନାହିଁ ।

ଦିନେ ପଣ୍ଡିତେ ଗୋଟାଏ ଜଟିଳ ବିଷୟ ତାଙ୍କ ଛାତ୍ରମାନଙ୍କୁ ବୁଝାଉଥିଲେ । ଗୋବିନ୍ଦ ଏକ ଧ୍ୟାନରେ ସେକଥା ଶୁଣୁଥିଲା । ହଠାତ୍ ପଣ୍ଡିତଙ୍କ ଆଖି ତା' ଉପରେ ପଡ଼ିଗଲା ।

"କିରେ, କାମଦାମ ଛାଡ଼ି କ'ଣ କରୁଛୁ ?" ପଣ୍ଡିତେ ପଚାରିଲେ ।

"ଆଜ୍ଞା ଆପଣଙ୍କ ବ୍ୟାଖ୍ୟା ଶୁଣି ଆଉ ସବୁ କଥା ଭୁଲିଯାଇଥିଲି ।" ଗୋବିନ୍ଦ ଉତ୍ତର ଦେଲା ।

"ସତେ ? ମୁଁ କ'ଣ କହିଲି, ତୁ ତାହା ତୋ' ନିଜ ଭାଷାରେ କହି ପାରିବୁ ?" ପଣ୍ଡିତେ ପଚାରିଲେ ।

"ଆପଣଙ୍କ ଆଜ୍ଞା ହେଲେ ଚେଷ୍ଟା କରିବି ।" ଏହା କହି ଗୋବିନ୍ଦ ପଣ୍ଡିତଙ୍କ ବ୍ୟାଖ୍ୟାକୁ ସଙ୍ଗେ ସଙ୍ଗେ ବୁଝାଇଦେଲା । ପଣ୍ଡିତଙ୍କ ବିସ୍ମୟ କହିଲେ ନ ସରେ । କାରଣ ସେ ପ୍ରଶ୍ନଟି ତାଙ୍କ ଛାତ୍ରମାନଙ୍କୁ ବି ପଚାରିଥିଲେ । କେହି ଉତ୍ତର ଦେଇ ପାରି ନ ଥିଲେ ।

ସେହି ଦିନରୁ ପଣ୍ଡିତେ ଗୋବିନ୍ଦକୁ ଛାତ୍ର ଭାବରେ ଗ୍ରହଣ କଲେ ।

ଗୋବିନ୍ଦ ଏପରି ମନ ଦେଇ ପଢ଼ୁଥାଏ ଯେ

ଅଚିରେ ସେ ସମସ୍ତଙ୍କୁ ଟପି ଗଲା । ଅନ୍ୟ ଛାତ୍ର-ମାନେ ତାକୁ ଈର୍ଷା କରୁଥିବାର ବୁଝିପାରି ଗୁରୁ ସେମାନଙ୍କୁ କହନ୍ତି, "ଗୋବିନ୍ଦ ଉପରେ ଦେବୀ ସରସ୍ୱତୀଙ୍କର କୃପା ଅଛି ମନେହୁଏ । ଦିନେ ସେ ବିଦ୍ୟାଚର୍ଚ୍ଚାରେ ମୋତେ ବଳିଯିବ, ସନ୍ଦେହ ନାହିଁ ।"

ଗୁରୁଙ୍କର ଏକଥା ସତ୍ତ୍ୱେ ଗୋବିନ୍ଦର ସହ-ପାଠୀମାନେ ତାକୁ ଈର୍ଷା କରିବାକୁ ଛାଡ଼ିଲେ ନାହିଁ । ଯେତେହେଲେ ଗୋବିନ୍ଦ ପ୍ରଥମେ ଚାକର ଭାବରେ ପଣ୍ଡିତଙ୍କ ପାଖରେ ରହିଥିଲା । ସେ ପୁଣି ଅତ୍ୟନ୍ତ ଗରିବ ଘରର ପିଲା । ତେଣୁ ତା' ଉନ୍ନତିକୁ ସେମାନେ ସହିପାରୁ ନ ଥିଲେ । କିନ୍ତୁ ଗୋବିନ୍ଦ କେବେହେଲେ ଗର୍ବ କରୁ ନ ଥିଲା କିମ୍ବା ବିରକ୍ତ ହେଉ ନ ଥିଲା ।

କ୍ରମେ ଖାଲି ବିଦ୍ୱାନ ଭାବରେ ନୁହେଁ, କବି ଓ ନାଟ୍ୟକାର ଭାବରେ ମଧ୍ୟ ଗୋବିନ୍ଦ ଜନ-ପ୍ରିୟତା ଲାଭ କଲା । ସେ ସଂସ୍କୃତରେ ଲେଖୁ-ଥାଏ । ସୁଧୀ-ସମାଜରେ ସେସବୁ ନାଟକ ବିଶେଷ ଆଦର ଲାଭ କରୁଥାଏ ।

ଗୋବିନ୍ଦ ଓ ତା' ସହପାଠୀମାନେ ଅଧ୍ୟୟନ ଶେଷ କଲେ । ସହପାଠୀମାନେ ଅନ୍ୟାନ୍ୟ କାମରେ ଲାଗିଲେ; ଏକା ଗୋବିନ୍ଦ କାବ୍ୟ କବିତା ନାଟକ ଇତ୍ୟାଦି ରଚନା କରି ଜୀବିକା ନିର୍ବାହ କରୁଥାଏ । ସେ ଯେଉଁ ବିଦ୍ୟା ଲାଭ କରିଥିଲା, ତା'ର ଯଥାର୍ଥ ପ୍ରୟୋଗ କରୁଥାଏ ।

ଥରେ ସହପାଠୀମାନେ ବଣିଜ ପାଇଁ ଯାଇ



ପଡ଼ୋଶୀ ଦେଶରେ ପହଞ୍ଚିଲେ । ସେଠାରେ ଦେଖିଲେ, ଭଦ୍ରକବି ନାମକ ଜଣେ ନାଟ୍ୟକାର ଅତ୍ୟନ୍ତ ଜନପ୍ରିୟ । ତେବେ ସେହି ରାଜ୍ୟର ଭାଷାରେ ତାଙ୍କ ନାଟକମାନ ମଞ୍ଚସ୍ଥ ହେଉଥାଏ । ଗୋବିନ୍ଦର ସହପାଠୀମାନେ ସେ ଭାଷା କିଛି କିଛି ବୁଝୁଥା'ନ୍ତି । ସେମାନେ ସେସବୁ ନାଟକ ଦେଖି ମୁଗ୍ଧ ହେଲେ । ନିଜ ନିଜ ଭିତରେ କଥାଭାଷା ହେଲେ : ଭଦ୍ରକବିଙ୍କ ନାଟକମାନ ଯଦି ଆମ ସେଠାରେ ଅଭିନୀତ ହୁଅନ୍ତା, ତେବେ ଗୋବିନ୍ଦର ଦର୍ପ ଚୂର୍ଣ୍ଣ ହୁଅନ୍ତା ।

ସେମାନେ ଯାଇ ଭଦ୍ରକବିଙ୍କୁ ସାକ୍ଷାତ କଲେ ଓ କହିଲେ, "ମହାଶୟ, ଆପଣଙ୍କ ନାଟକମାନ ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ । ଆମ ରାଜ୍ୟରେ କେବଳ ସଂସ୍କୃତରେ ନାଟକ ଅଭିନୟ ହେବା ବିଧି । ଆପଣ ଯଦି ଏସବୁ ନାଟକ ସଂସ୍କୃତରେ ଅନୁବାଦ କରି ଦିଅନ୍ତେ, ତେବେ ଆମ୍ଭେମାନେ ଆମ ରାଜ୍ୟରେ ଏସବୁ ଅଭିନୟର ବ୍ୟବସ୍ଥା କରନ୍ତୁ । ଆପଣ ସେଠାରେ ମଧ୍ୟ ଜନପ୍ରିୟ ହୁଅନ୍ତେ ।

"ଧନ୍ୟବାଦ, କିନ୍ତୁ ଏସବୁ ନାଟକ ମୂଳତଃ ସଂସ୍କୃତରେ ଲେଖା । ମୁଁ ମୋ ମାତୃଭାଷାରେ ଅନୁବାଦ କରିଛି ମାତ୍ର ।"

"ମୂଳ ସଂସ୍କୃତ ନାଟକଗୁଡ଼ିକର ଲେଖକ ତେବେ କିଏ ?" ଆଗନ୍ତୁକମାନେ ପ୍ରଶ୍ନ କଲେ ।

"ପଡ଼ୋଶୀ ରାଜ୍ୟରେ ଗୋବିନ୍ଦ ଶର୍ମା ନାମକ ଜଣେ ମହାନ୍ କବି ଓ ନାଟ୍ୟକାର ଅଛନ୍ତି । ମୂଳଲେଖା ତାଙ୍କର ।" ଭଦ୍ରଲୋକ ଜଣାଇଲେ ।

ଆଗନ୍ତୁକମାନଙ୍କ ମୁଣ୍ଡ ତଳକୁ ହୋଇଗଲା । ଈର୍ଷାବଶତଃ ସେମାନେ କେବେ ଗୋବିନ୍ଦର ନାଟକ ଦେଖିବାକୁ ଯାଇ ନ ଥିଲେ । ତେଣୁ ସେସବୁ ନାଟକ ସହ ସେମାନଙ୍କର ପରିଚୟ ନ ଥିଲା ।

ତେଣିକି ସେମାନେ ଗୋବିନ୍ଦକୁ ଦବାଇବା ଦିଗରେ କୌଣସି ଚେଷ୍ଟା କଲେ ନାହିଁ ।



# ମୁକ୍ତିର ଉପାୟ !

ଜଗୁ ନାମରେ ଗୋଟାଏ ଡକାଏତ ଥାଏ । ଥରେ ତା' ମନକୁ ଆସିଲା : ଡକାଏତି କରି ଗୁଡ଼ାଏ ପାପ ସଞ୍ଚିଲିଣି । ଏସବୁରୁ ମୁକ୍ତି କିପରି ମିଳିବ ?

ସେତିକିବେଳେ ତା' ଗାଁରେ ଜଣେ ଭଣ୍ଡ ସାଧୁ ଡେରା ପକାଇଥାଏ । ଦିନେ ଭଣ୍ଡ ଲୋକଙ୍କୁ କହୁଥାଏ, "ଲୋକେ କାହିଁକି ଅନ୍ୟଠାରୁ ଚୋରି କରନ୍ତି ? ନିଜ ଆବଶ୍ୟକତା ମେଣ୍ଟାଇବା ପାଇଁ । କିନ୍ତୁ ଚୋରି ପାପ । ଚୋରି ଧନରୁ ଅଧା ଯଦି ଦେବତାଙ୍କ ସେବାରେ ଅର୍ପଣ କରାଯାଏ, ତେବେ ପାପରୁ ମୁକ୍ତି ମିଳେ । ମୁଁ ଏଠାରେ ସେଥିପାଇଁ ବାକ୍ସ ଥୋଇଛି । ଯେଉଁମାନେ ପାପରୁ ମୁକ୍ତି ଚାହିଁବେ, ସେମାନେ ଅଧା ଧନ ଏହା ଭିତରେ ପକାଇବେ ।"

କେତେଜଣ ଲୋକ ହୁଣ୍ଡିରେ ଟଙ୍କା ପଇସା ପକାଇଲେ ।

ଦୁଇଦିନ ପରେ ଭୋରରୁ ସାଧୁ ହୁଣ୍ଡି ଖୋଲି ଦେଖିଲେ, ସେଥିରେ ଖଣ୍ଡିଏ କାଗଜ ଅଛି । ସେଥିରେ ଲେଖା ଅଛି, "ସାଧୁ ମହାରାଜ ! ମୁଁ ମୋ ଆବଶ୍ୟକତା ମେଣ୍ଟାଇବା ପାଇଁ ହୁଣ୍ଡିରେ ଥିବା ସମୁଦାୟ ଧନ କାଢ଼ି ନେଇ ପୁଣି ସେ ବାବଦରେ ହେବା ପାପରୁ ମୁକ୍ତି ପାଇବା ପାଇଁ ଅଧା ରଖିଦେଲି । ପାପରୁ ଯେମିତି ମୁକ୍ତି ପାଇବି, ସେ ବ୍ୟବସ୍ଥା କରିବେ ।"





# ସନ୍ତାନର କର୍ତ୍ତବ୍ୟ

ତ୍ରିଲୋଚନବାବୁ ଥିଲେ ଗ୍ରାମର ସବୁଠାରୁ ଧନୀ ଲୋକ । ତାଙ୍କର ଝିଅ ବାହାଘର ପାଇଁ ସେ ଯାଇଥିଲେ ଅଳଙ୍କାର କିଣିବାକୁ । ପଚିଶ ହଜାର ଟଙ୍କାର ଅଳଙ୍କାର କିଣିଲେ । ହେଲେ ତାଙ୍କ ପାଖରେ ମାତ୍ର ପନ୍ଦର ହଜାର ଟଙ୍କା ଥିଲା । ବାଧ୍ୟ ହୋଇ ଦଶହଜାର ଟଙ୍କା ବାକି ରଖି ଆସିଲେ ।

ଶ୍ରେଷ୍ଠ ଅଳଙ୍କାର ବ୍ୟବସାୟୀ ଭାର୍ଗବଗୁପ୍ତ ତ୍ରିଲୋଚନବାବୁଙ୍କ ଉଦାରତା ଓ ସାଧୁତା ବିଷୟରେ ଆଗରୁ ଶୁଣିଥିଲେ; ତେଣୁ ବାକି ଟଙ୍କା କଥା ଖାତାରେ ମଧ୍ୟ ଲେଖିଲେ ନାହିଁ ଓ ଅନେକ ଦିନ ପରେ ଭୁଲିଗଲେ ।

କିନ୍ତୁ ତ୍ରିଲୋଚନବାବୁ ଭାର୍ଗବଙ୍କର ବାକି ଟଙ୍କା କଥା ଭୁଲି ନ ଥିଲେ । ହାତରେ ପଇସା ନ ଥିବାରୁ ବାକି ଟଙ୍କା ପରିଶୋଧ କରିପାରି ନ ଥିଲେ । ଇତିମଧ୍ୟରେ ତାଙ୍କର ଆର୍ଥିକ ଅବସ୍ଥା କ୍ରମଶଃ ଖରାପ ଆଡ଼କୁ ଗଲା ଓ ଦେହର ଅବସ୍ଥା ମଧ୍ୟ ଖରାପ ଥିଲା । କିଛି ଦିନ ପରେ ସେ ଜାଣିପାରିଲେ ତାଙ୍କର ଶେଷ ସମୟ ଉପସ୍ଥିତ । ତେଣୁ ସେ ପୁଅ ରାମପ୍ରସାଦକୁ ପାଖକୁ ଡାକି କହିଲେ, "ଦେଖ ପୁଅ, ତୋ ଅପା ବାହାଘରରେ ଭାର୍ଗବଙ୍କଠାରୁ ମୁଁ ପଚିଶ ହଜାର ଟଙ୍କାର ଅଳଙ୍କାର କିଣିଥିଲି । ସେଥିରୁ ଦଶହଜାର ଟଙ୍କା ଏବେ ମଧ୍ୟ ବାକି ଅଛି । ସେ ସବୁ ପରିଶୋଧ କରିବା ପୂର୍ବରୁ ମୁଁ ଅସୁସ୍ଥ ହୋଇପଡ଼ିଲି । ତୁ ଯଦି ତାକୁ ନ ଶୁଝିବୁ, ମୋର ଆତ୍ମା ଅତୃପ୍ତ ରହିବ । ମୋତେ କଥା ଦେ ସେ ଟଙ୍କା ଶୁଝିବୁ, ତେବେ ଯାଇ ମୁଁ ନିଶ୍ଚିତ ହୋଇ ଆଖି ବୁଜିବ ।" ରାମପ୍ରସାଦ ବାପାଙ୍କୁ କଥା ଦେଲା କରଜ ଶୁଝିବା ପାଇଁ । ତା'ପରେ ତ୍ରିଲୋଚନବାବୁ ଶାନ୍ତିରେ ଆଖି-ବୁଜିଲେ ।

ତାଙ୍କ ମୃତ୍ୟୁ ପରେ ରାମପ୍ରସାଦ ଜୀବିକାର୍ଜ୍ଜନ ପାଇଁ ଅନ୍ୟ ଏକ ରାସ୍ତା ଧରିଲା । ସେ ବହୁ

ରାମଚନ୍ଦ୍ର

ପରିଶ୍ରମ କରି ଧନ ଉପାର୍ଜନ କଲା ଓ ସେଥିରୁ କିଛି କିଛି ସଞ୍ଚୟ କଲା ।

ଅନେକ ଦିନ ପରେ ଯେତେବେଳେ ରାମପ୍ରସାଦର ସଞ୍ଚୟ ଦଶହଜାର ହୋଇଗଲା, ସେତେବେଳେ ସେ ତାକୁ ଭାର୍ଗବଙ୍କ ହାତରେ ଦେବାପାଇଁ ତାଙ୍କ ଘର ଖୋଜିବୁଲିଲା । ଆଗରୁ ଜାଣିଥିବା ଘର ଖୋଜି ପାଇ ତା' ଭିତରକୁ ପ୍ରବେଶ କରି ଦେଖିଲା ସେଠାରେ ଜଣେ ଯୁବକ ଅଛି । ସେ ରାମପ୍ରସାଦକୁ ପଚାରିଲା, "ଭାଇ, ତୁମେ କିଏ ? କେଉଁଠୁ ଆସିଛ ? ତୁମର ଦରକାର କ'ଣ ?"

"ଆଜ୍ଞା ମୁଁ ଭାର୍ଗବଙ୍କ ଘର ଖୋଜୁଛି, ତାଙ୍କୁ ଦେଖା କରିବାକୁ ଚାହେଁ ।" ରାମପ୍ରସାଦ କହିଲା ।

"ଭାର୍ଗବବାବୁ ତ ଅନେକ ଦିନରୁ ମରିଗଲେଣି ।" ଯୁବକଟି ଉତ୍ତର ଦେଲା ।

"ତେବେ ତାଙ୍କ ପୁଅ କାହାନ୍ତି ?" ରାମପ୍ରସାଦ ପୁଣି ପଚାରିଲା ।

"ଭାର୍ଗବବାବୁ ତାଙ୍କର ଶେଷ ସମୟ ବେଳକୁ ଅନେକ କରଜ କରିପକାଇ ଥିଲେ । ସେ ସବୁ ପରିଶୋଧ କରି ନପାରି ତାଙ୍କ ପୁଅ ମଧ୍ୟ କୁଆଡ଼େ ଚାଲିଗଲା ।" ଯୁବକଟି କହିଲା । ଏକଥା ଶୁଣି ରାମପ୍ରସାଦ ଆଶ୍ଚର୍ଯ୍ୟ ହୋଇଗଲା । ମୁଁ ତ ଶୁଣିଛି ଯେ ଭାର୍ଗବବାବୁ ଖୁବ୍ ଧନୀ ଅଳଙ୍କାର ବ୍ୟବସାୟୀ ଥିଲେ । ସେପରି ଲୋକଙ୍କୁ କାହିଁକି କରଜ କରିବାକୁ ପଡ଼ିଲା ?" ରାମପ୍ରସାଦ ପୁଣି ପଚାରିଲା ।

ଯୁବକଟି ବୁଝାଇବାକୁ ଚେଷ୍ଟା କରି କହିଲା, "କ'ଣ ଆଉ ସେ କଥା କହିବି ଭାଇ ! ସେ ନିଜ ବ୍ୟବସାୟରେ ସନ୍ତୁଷ୍ଟ ନ ହୋଇ ଅଧିକ ଧନ ଅର୍ଜନ କରିବା ପାଇଁ ସମୁଦ୍ରରେ ବାଣିଜ୍ୟ



କଲେ । ସେତେବେଳେ ସେ ଅନେକ କରଜ କରିଥିଲେ । ହେଲେ ଶେଷକୁ ସେ ତ ମରିଗଲେ ଜାହାଜ ବୁଡ଼ିବାରେ, ସବୁ ଧନ ତ ଗଲା, କିନ୍ତୁ ରହିଗଲା ଖାଲି କରଜ । ସେସବୁଥିରେ ବିବ୍ରତ ହୋଇ ତାଙ୍କ ପୁଅ ବି କୁଆଡ଼େ ଚାଲିଗଲା ।"

"ଓଃ, କି ଅସୁବିଧା ହେଲା । ଭାର୍ଗବବାବୁଙ୍କ ଜୀବିତାବସ୍ଥାରେ ମୋ ବାପା ତାଙ୍କଠାରୁ ଅଳଂକାର କିଣି ଦଶହଜାର ଟଙ୍କା ବାକି ରଖିଥିଲେ । ସେ ସେସବୁ ମୃତ୍ୟୁ ସମୟକୁ ମୋତେ କହିଗଲେ । ମୁଁ ମୋ ବାପାଙ୍କୁ କଥା ଦେଇଥିଲି ବାକି ଟଙ୍କା ଶୁଝିବାକୁ । ସେଥିପାଇଁ ମୁଁ ଯତ୍ପରୋନାସ୍ତି ଚେଷ୍ଟା କରି ଟଙ୍କା ଜମାଇ ରଖି ରଖି ଶେଷରେ ଆଜି ତାଙ୍କୁ ଦେଇ ଦେବାକୁ ଆସିଥିଲି । ଯଦି ତାଙ୍କ ପୁଅକୁ ବି ପାଇଲି ନାହିଁ ତେବେ ତାଙ୍କ ନାମରେ ଗୋଟିଏ ଧର୍ମଶାଳା କରିଦେବି । ଅନ୍ତତଃ ମୋ ବାପାଙ୍କ ଆତ୍ମା ଶାନ୍ତି ଲଭିବ ।" ରାମପ୍ରସାଦ କହିଲା ।

ଯୁବକଟି କିନ୍ତୁ ତତ୍‌କ୍ଷଣାତ୍ କହିଲା, "ଭାଇ ମୋତେ କ୍ଷମା କର । ମୁହିଁ ତାଙ୍କ ପୁଅ । ମୁଁ ଭାବିଲି କି ପୁଣି କେହି ବାପାଙ୍କ କରଜ ଆଦାୟ କରିବାକୁ ଆସିଛି । ସେଥିପାଇଁ ମିଛ କହିଲି ।"

ଏକଥା ଶୁଣି ରାମପ୍ରସାଦ ଦୁଃଖିତ ହୋଇ କହିଲା, "ମହାଶୟ, ବାପାଙ୍କର କରଜ ଦେଖି କାହିଁକି ଡରୁଛନ୍ତି ? ବରଂ କଷ୍ଟକରି ଧୀରେ ଧୀରେ ଶୁଝିଦେବା ଦ୍ୱାରା ତାଙ୍କର ପ୍ରତିଷ୍ଠା ଓ ସୁନାମ ଅକ୍ଷୁର୍ଣ୍ଣ ରହିବ । ଏହା କ'ଣ ପୁତ୍ରର ଧର୍ମ ନୁହେଁ ? ଜାଣନ୍ତି ନାହିଁ ମୁଁ ବାପାଙ୍କର ସୁନାମ ରକ୍ଷା କରିବାକୁ କେତେ କଷ୍ଟରେ ଏତକ ଟଙ୍କା ସଂଗ୍ରହ କରିଛି । ବର୍ତ୍ତମାନ ଏ ଟଙ୍କା ନିଅନ୍ତୁ । ଏହାକୁ ମୂଳଧନ କରି କିଛି ବ୍ୟବସାୟ କରି ବାପାଙ୍କର କରଜ ପରିଶୋଧ କରିଦିଅନ୍ତୁ । କିନ୍ତୁ ବାପାଙ୍କର କରଜକୁ ତୁଚ୍ଛା ବୋଝ ବୋଲି ଭାବିବେ ନାହିଁ ।" ଏକଥା କହି ରାମପ୍ରସାଦ ଭାର୍ଗବଙ୍କ ପୁଅକୁ ଦଶହଜାର ଟଙ୍କା ଦେଲା ।

ଭାର୍ଗବଙ୍କ ପୁଅ ସେ ଟଙ୍କାକୁ ବ୍ୟବସାୟରେ ଲଗାଇ ବହୁତ ଧନ ଅର୍ଜ୍ଜନ କଲା ଓ ଶେଷରେ ବାପାଙ୍କର ସମସ୍ତ କରଜ ଟଙ୍କାକୁ ପରିଶୋଧ କରିଦେଇ ପାରିଲା ।





# ଦେବୀ ଭାଗବତ

ଆଦିଶକ୍ତି-ଦେବୀଙ୍କ ଆରାଧନା କରି କେତେ ଲୋକ କେତେ ପ୍ରକାରରେ ଉପକୃତ ହୋଇଛନ୍ତି ।

ପ୍ରାଚୀନ କାଳରେ ସୁରଥ ନାମକ ରାଜା ଗୋଟିଏ ବିଶାଳ ରାଜ୍ୟ ଶାସନ କରୁଥିଲେ । ସେ ଥିଲେ ଅତ୍ୟନ୍ତ ନୀତିବାନ୍ । କେବେ କାହାର ପ୍ରତି ଅନ୍ୟାୟ କରୁ ନ ଥିଲେ; କାହାକୁ ହିଂସା କରୁ ନ ଥିଲେ ।

ରାଜାଙ୍କ ଶାନ୍ତଶିଷ୍ଟ ଚରିତ୍ର ଯୋଗୁ ତାଙ୍କ ସେନାପତିମାନେ ସୈନ୍ୟବାହିନୀକୁ ସବୁବେଳେ ସତର୍କ ଓ ସୁଶୃଙ୍ଖଳ ରଖିବାର ଆବଶ୍ୟକତା ଅନୁଭବ କଲେ ନାହିଁ । ସୈନ୍ୟବାହିନୀକୁ ନୂଆ-ଲୋକ ନିଆ ହେଲେ ନାହିଁ କି ପୁରୁଣା ଲୋକମାନଙ୍କୁ ମଧ୍ୟ ଯୁଦ୍ଧ ବିଦ୍ୟାର ଅଭ୍ୟାସ ବଜାୟ ରଖିବା ଦିଗରେ କୌଣସି ଉତ୍ସାହ ଦିଆଗଲା ନାହିଁ । ଫଳରେ ଯାହା ହେବାର ତାହାହିଁ ହେଲା । ଆଖପାଖର ରାଜାମାନେ ସୁରଥଙ୍କ ରାଜ୍ୟ ପ୍ରତି ଲୋଲୁପ ଦୃଷ୍ଟି ନିକ୍ଷେପ କରିବାକୁ ଲାଗିଲେ ।

"ମହାରାଜ, ଆମ ତରଫରୁ ଟିକିଏ ସୈନ୍ୟ ସଜାସଜି ନ ହେଲେ ଅନ୍ୟମାନେ ଆମକୁ ଆକ୍ରମଣ କରିପାରନ୍ତି ।" ସେନାପତି ଥରେ ରାଜାଙ୍କୁ କହିଲେ ।

କିନ୍ତୁ ରାଜା ହସି ଉତ୍ତର ଦେଲେ, "ତୁମେ ଅନ୍ୟ ରାଜାଙ୍କୁ ଏତେ ଖରାପ ଲୋକ ବୋଲି ଭାବୁଛ କାହିଁକି ?"

ଏଭଳି ଯେଉଁ ଭଦ୍ର ରାଜା ସୁରଥ, ଥରେ

ରାଜା ସୁରଥ ଓ ସମାଧି ବୈଶ୍ୟ କଥା



ତାଙ୍କ ରାଜ୍ୟ ଆକ୍ରମଣ କଲେ ଗୋଟିଏ ଦୁର୍ଦ୍ଧର୍ଷ ପାହାଡ଼ିଆ ଉପଜାତି ।

ରାଜା ସୁରଥ ଯଥାସାଧ୍ୟ ଯୁଦ୍ଧ କଲେ । କିନ୍ତୁ ସେ ଦେଖିଲେ, ଶତ୍ରୁପକ୍ଷ ବହୁତ ପ୍ରବଳ; ଦ୍ୱିତୀୟରେ, ତାଙ୍କ ନିଜ ମନ୍ତ୍ରୀ ଶତ୍ରୁପକ୍ଷ ସହିତ ଯୋଗଦେଇଥିବାର ସେ ବୁଝିପାରିଲେ ।

ସେ ଅତ୍ୟନ୍ତ ବ୍ୟଥିତ ଓ ବିଚଳିତ ହେଲେ । ମନ୍ତ୍ରୀ ତାଙ୍କ ରାଜ୍ୟ ତଥା ପ୍ରାସାଦର ସବୁ ରହସ୍ୟ ଜାଣିଥିଲେ । ମନ୍ତ୍ରୀ ଯେତେବେଳେ ଶତ୍ରୁମାନଙ୍କ ହାତବାରିସି ହେଲେଣି, ସେତେବେଳେ ଆଉ ତାଙ୍କ ବିଜୟଲାଭର ପ୍ରଶ୍ନ ବା କାହିଁ ଉଠୁଛି ?

ବିଶ୍ୱାସଘାତକ ମନ୍ତ୍ରୀ ହୁଏତ ତାଙ୍କୁ ଶତ୍ରୁପକ୍ଷ ହାତରେ ସମର୍ପିଦେବେ ଏବଂ ଶତ୍ରୁପକ୍ଷ ତାଙ୍କ ପ୍ରାଣନାଶ କରିବେ, ଏହି ଆଶଙ୍କାରେ ରାଜା ଗୋପନରେ ପ୍ରାସାଦ ଛାଡ଼ି ପଳାଇଗଲେ ।

ଗୋଟିଏ ଉତ୍ତମ ଘୋଡ଼ାରେ ବସି ରାଜା ତୀବ୍ର ଗତିରେ ରାଜଧାନୀ ଛାଡ଼ି ବହୁ ଦୂରରେ ଅବସ୍ଥିତ ଗୋଟିଏ ବଣରେ ପ୍ରବେଶ କଲେ । ବଣ ଭିତରେ ସେ ଗୋଟିଏ ନଦୀ ବହିଯାଉଥିବାର ଦେଖିଲେ । ସେ ସ୍ଥାନ ଖୁବ୍ ମନୋରମ ଦିଶୁଥାଏ । ସେଠାରେ ନାନା ଜାତିର ପଶୁମାନେ ଅବାଧରେ ବିଚରଣ କରୁଥାନ୍ତି । ଅଦୂରରୁ ବେଦଧ୍ୱନି ଭାସି ଆସୁଥିବାର ସେ ଶୁଣିପାରିଲେ ।

ଅଦୂରରେ ଠିଆ ହୋଇ ରାଜା ସୁରଥ ମୁନିଙ୍କ ଭାବକୁ ଲକ୍ଷ୍ୟ କଲେ । କେଡ଼େ ସରଳ ଭାବରେ ମୁନି କେଡ଼େ ଜ୍ଞାନଗର୍ଭକ କଥାମାନ କହି ଯାଉଥିଲେ ! ରାଜକାର୍ଯ୍ୟରେ ବ୍ୟସ୍ତ ରହି ରାଜା କେବେ କୌଣସି ଆଶ୍ରମକୁ ଯିବାର ସୁଯୋଗ ପାଇ ନ ଥିଲେ କି କୌଣସି ମୁନିଋଷିଙ୍କୁ ଭେଟି ନ ଥିଲେ । ଆଜି ଜଣେ ମୁନିଙ୍କ ଦର୍ଶନ ପାଇ ତାଙ୍କ ହୃଦୟରେ ଭକ୍ତିଭାବର ଉଦୟ ହେଲା । ମନର ଦୁଃଖ ସାମୟିକ ଭାବରେ ଦୂର ହେଲା ।

ରାଜା ସୁରଥ ବୁଝିଲେ କି ପାଖରେ ଗୋଟିଏ ଆଶ୍ରମ ଅଛି । ବେଦଧ୍ୱନି ତଥା ଧୂପର ସୁଗନ୍ଧ ଅନୁସରଣ କରି ସେ ଯାଇ ଗୋଟିଏ ଆଶ୍ରମରେ



ପହଞ୍ଚିଲେ । ସେଠାରେ ଜଣେ ଗୁରୁ ଶିଷ୍ୟମାନଙ୍କୁ ଶିକ୍ଷାଦାନ କରୁଥିବାର ସେ ଦେଖିଲେ । ସେତେବେଳେ ଗୁରୁ ମୃଗଚର୍ମ ଉପରେ ବସିଥିଲେ । ସେ ଦୁର୍ବଳ ଦିଶିବା ସତ୍ତ୍ୱେ ତାଙ୍କ ମୁଖମଣ୍ଡଳରେ ସୌମ୍ୟଭାବ ଭରି ରହିଥିଲା ।

ସୁରଥ ନିଜ ଘୋଡ଼ାକୁ ଗୋଟାଏ ଗଛରେ ବାନ୍ଧିଦେଇ ମୁନିଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ ।

ମୁନି ତାଙ୍କୁ ଉଠିବାକୁ ଇସାରା ଦେଲେ । ଜଣେ ଶିଷ୍ୟ ମୃଗଚର୍ମ ଆଣିଲା । ରାଜାଙ୍କୁ ତହିଁ ଉପରେ ବସାଇ ମୁନି ପଚାରିଲେ, "ପୁଅ, ତୁମେ କୁଆଡ଼ୁ ଆସିଲ ? ତୁମେ କ୍ଳାନ୍ତ ଦିଶୁଛ । କ'ଣ ହୋଇଛି ? ସବିସ୍ତାରେ କୁହ । ଚିନ୍ତା କର ନାହିଁ । ତୁମ ସମସ୍ୟା ଯେତେ ଜଟିଳ ହେଲେ ବି ମୁଁ ତୁମର ସହାୟତା କରିବ ।"

ରାଜା ସୁରଥ ଗଦ୍‌ଗଦ କଣ୍ଠରେ କହିଲେ, "ମହାତ୍ମା ! ମୁଁ ସୁରଥ ନାମକ ଜଣେ ରାଜା । ଶତ୍ରୁ କବଳରେ ପଡ଼ି ମୋ ରାଜ୍ୟ ହରାଇ ପଳାଇ ଆସିଛି । ଆପଣଙ୍କ ଶରଣ ନେଲି । ମୋ ପରିବାର ଶତ୍ରୁ ପରିବେଷ୍ଟିତ ଅବସ୍ଥାରେ ଅଛନ୍ତି । କୌଣସି ପ୍ରକାରେ ମୋତେ ଏ ସଙ୍କଟରୁ ଉଦ୍ଧାର ପାଇବାର ବାଟ ବତାଇଦିଅନ୍ତୁ । ମୋ ପରିବାରକୁ କିପରି ଉଦ୍ଧାର କରିବି, ତାହା କହିଦିଅନ୍ତୁ ।"

ମୁନି ସୁରଥଙ୍କୁ ଅଭୟ ଦେଇ କହିଲେ, "ତୁମେ ମୋ ଆଶ୍ରମରେ ରହିଥାଅ । ମନକୁ ଭୟଶୂନ୍ୟ ରଖ; ପୁଣି ନିଜ ଭିତରେ ହିଂସାକୁ ଠାଇଁ ଦିଅ ନାହିଁ । ଧୀରେ ଧୀରେ ତୁମର ଶୁଭ ହେବ ।"

ସୁରଥ ଆଶ୍ୱସ୍ତ ହେଲେ ଓ ଜଣେ ଆଶ୍ରମବାସୀ ଭଳି ଆଶ୍ରମରେ ହିଁ ରହିଲେ ।

ଦିନେ ସୁରଥ ଏକ ବୃକ୍ଷର ଶୀତଳ ଛାୟାରେ ବସି ଚିନ୍ତାମଗ୍ନ ଥିଲେ । ତାଙ୍କ ନିଜ ତରଫରୁ କୌଣସି ତ୍ରୁଟି ନ ଥିଲେ ସୁଦ୍ଧା ସେ ରାଜ୍ୟରୁ ବଞ୍ଚିତ ହେଲେ; ପରିବାରରୁ ବିଚ୍ଛିନ୍ନ ହେଲେ; ଶତ୍ରୁଦ୍ୱାରା ଲାଞ୍ଛିତ ହେଲେ । ଏହିସବୁ କଥା ଭାବି ସେ ଅତ୍ୟନ୍ତ ଦୁଃଖ ଅନୁଭବ କରୁଥାନ୍ତି ।



ସେତିକିବେଳେ ଜଣେ ସାଧାରଣ ଲୋକ ଆସି ତାଙ୍କ ଆଗରେ ପହଞ୍ଚିଲା ।

"ତୁମେ କିଏ ? ଏଠାକୁ କି ଉଦ୍ଦେଶ୍ୟରେ ଆସିଛ ? କୌଣସି ସମସ୍ୟାରେ ପଡ଼ିଛ କି ?" ରାଜା ପଚାରିଲେ ।

"ମୋ କଥା କାହିଁକି ପଚାରୁଛନ୍ତି ଆଜ୍ଞା ! ମୁଁ ଜଣେ ଧନବାନ୍ ବଣିକ । ଜୀବନରେ ବହୁ ଅର୍ଥ ଉପାର୍ଜନ କରିଛି, ବହୁ ଦାନ ଧର୍ମ କରିଛି । ଆତ୍ମୀୟସ୍ୱଜନ ସମସ୍ତଙ୍କୁ ସୁଖରେ ରଖିବାକୁ ଚେଷ୍ଟା କରିଛି । କିନ୍ତୁ ଧନ ଲୋଭରେ ମୋ ସ୍ତ୍ରୀ ଓ ପୁଅ ମୋତେ ଏପରି ଅବସ୍ଥାରେ ପକାଇଦେଲେ ଯେ ମୋତେ ଘର ଛାଡ଼ି ଚାଲିଆସିବାକୁ ପଡ଼ିଲି । କିନ୍ତୁ ଆପଣଙ୍କ କଥା କ'ଣ ?" ବଣିକ ପଚାରିଲା ।

"ମୋ ନାମ ସୁରଥ । ମୁଁ ଜଣେ ରାଜା । ଶତ୍ରୁ ହାତରେ ହୀନସ୍ତା ଭୋଗି ମରିବାକୁ ଯାଉଥିଲି । ତେବେ ପଳାଇଆସି ଅଳ୍ପକେ ବଞ୍ଚିଗଲି । ଏଇଠାରେ ମୁନିଙ୍କ ଆଶ୍ରାରେ ପଡ଼ିରହିଛି । ଦେଖୁଛି ଆଉ ଚିନ୍ତା କରି ଲାଭ ନାହିଁ । ତୁମେ ବି ଏହିଠାରେ ରହିଯାଅ । ଦୁହେଁ ଏକାସାଥିରେ କାଳ କାଟୁଥିବା ।" ରାଜା କହିଲେ ।

"ରାଜା ! ମୋ ସାଥିରେ ତୁମେ ଶାନ୍ତିରେ ରହିପାରିବ ନାହିଁ । କାରଣ ମୋ ମନରେ ସବଦା ଅଶାନ୍ତି ପୂରିରହିଛି । ସ୍ତ୍ରୀ ଓ ପୁଅ କଥା ମନେ ପଡୁଛି । କଠୋର ପରିଶ୍ରମ କରି ମୁଁ ଯେତିକ ଧନସମ୍ପଦ ଉପାର୍ଜନ କରିଥିଲି, ମୋ ଅଯୋଗ୍ୟ ପୁଅ ସେସବୁ କେଇଦିନରେ ଉଡ଼ାଇଦେଇ ଗରିବ ହୋଇଯିବ । ଏହି ଚିନ୍ତାରେ ମୁଁ ସବଦା ଅସ୍ଥିର ।" ବଣିକ କହିଲା ଓ ସଙ୍ଗେ ସଙ୍ଗେ କାନ୍ଦିବାକୁ ଲାଗିଲା ।

ସୁରଥ କହିଲେ, "ତୁମେ ବଡ଼ ଅଦ୍ଭୁତ ଲୋକ । ଯେଉଁମାନେ ତୁମକୁ ଏତେ ଦୁଃଖ ଦେଇ ଘରୁ ବାହାର କରିଦେଲେ, ତୁମେ ପୁଣି ସେମାନଙ୍କ ପାଇଁ ମନ ଖରାପ କରୁଛ ! ମୁଁ ବି ତ ରାଜ୍ୟ, ପରିବାର ସବୁ ହରାଇଛି ! କିନ୍ତୁ କରିଯିବ କ'ଣ ? ଯେଉଁ ଘଟଣା ଉପରେ

ଆମର ହାତ ନାହିଁ, ତାକୁ ନେଇ କନ୍ଦାକଟା କରି ଲାଭ କ'ଣ ? ବରଂ ଚାଲ, ମୁନିଙ୍କୁ ପଚାରିବା । ହୁଏ ତ ସେ ଏପରି କିଛି ପରାମର୍ଶ ଦେବେ, ଯାହା ଫଳରେ ଆମ ଅବସ୍ଥା ସୁଧାରି-ଯିବ ।"

ବଣିକ ସୁରଥଙ୍କ ସହ ମୁନିଙ୍କ ପାଖକୁ ଗଲା । ସେ ତାଙ୍କୁ ପ୍ରଣାମ କରିସାରିବା ଉତ୍ତାରୁ ସୁରଥ କହିଲେ, "ମହାତ୍ମା ! ଏ ଲୋକଟି ଗୋଟିଏ ବଣିକ । ମୋ ସହ ଏହାଙ୍କର ଏଇଠାରେ ଦେଖା ଓ ବନ୍ଧୁତା । ଏହାଙ୍କ ସରଳ ବିଶ୍ୱାସର ସୁଯୋଗ ନେଇ ଏହାଙ୍କ ସ୍ତ୍ରୀ ଓ ପୁଅ ଏହାଙ୍କୁ ଘରୁ ତଡ଼ିଦେଇଛନ୍ତି, ଆପଣ ମୋତେ ଯେପରି ଆଶ୍ରା ଦେଇଛନ୍ତି, ଏହାଙ୍କୁ ବି ସେହିପରି ଦିଅନ୍ତୁ । ତା'ଛଡ଼ା ଆମେ କିପରି ନିଜ ନିଜ ଦୁଃଖରୁ ଉତ୍ତୀର୍ଣ୍ଣ ହୋଇପାରିବୁ, ସେ ଉପାୟ ମଧ୍ୟ ବତାଇଦିଅନ୍ତୁ ।"

ସୁରଥଙ୍କ ନିବେଦନ ଶୁଣି ମୁନି କହିଲେ, "ଆରେ ବାବୁ, ମୋହସାଗରରେ ବୁଡ଼ି କଲବଲ ନ ହୁଏ କିଏ ? ତୁମେ ତ ଛାର ମଣିଷ । ଦିଅଁଙ୍କ କଥା କହୁଛି, ଶୁଣ ।"

ମୁନି କହିଲେ : ଦ୍ୱାପର ଯୁଗରେ ନାରାୟଣ ଶ୍ୱେତ ଦ୍ୱୀପରେ ଧ୍ୟାନମଗ୍ନ ଥା'ନ୍ତି । ବ୍ରହ୍ମା ମଧ୍ୟ ସେତେବେଳେ ଧ୍ୟାନ କରୁଥିଲେ । ଧ୍ୟାନ ଅନ୍ତେ ଦୁହେଁ ସ୍ୱ ସ୍ୱ ସ୍ଥାନକୁ ଫେରୁଛନ୍ତି, ବାଟରେ



ପରସ୍ପର ମୁହାଁମୁହିଁ ହୋଇଗଲେ ।

ସେତେବେଳେ ସେ ଦୁଇଜଣଙ୍କୁ ମାୟାମୋହ ଆଚ୍ଛନ୍ନ କରିଥାଏ । କେହି ନିଜ ନିଜର ପ୍ରକୃତ ଚେତନାରେ ନ ଥାନ୍ତି ।

ବ୍ରହ୍ମା ନିଜ ପରିଚୟ ଦେବା ଛଳରେ ବିଷ୍ଣୁଙ୍କୁ କହିଲେ, "ମୁଁ ଚରାଚର ବିଶ୍ୱର ସୃଷ୍ଟିକର୍ତ୍ତା ।"

ବିଷ୍ଣୁ କହିଲେ, "ମୋ ଆଗରେ ନିଜକୁ ସୃଷ୍ଟିକର୍ତ୍ତା ବୋଲି ଜାହିର୍ ନ କଲେ ଭଲ ହୁଅନ୍ତା । ସୃଷ୍ଟିର ଲାଳନପାଳନ କରୁଛି ମୁଁ । ଥରେ ମଧୁ ଓ କୈଟଭ ନାମକ ଦୁଇ ରାକ୍ଷସଙ୍କୁ ମାରି ତୁମକୁ ରକ୍ଷା କରିଥିଲି, ସେ କଥା ବୋଧ ହୁଏ ଭୁଲିଯାଇଛ । କେତେଥର ରାକ୍ଷସମାନେ



ତୁମକୁ ମାରିଗୋଡ଼ାଇଛନ୍ତି, ମୁଁ ଛଳେ ବଳେ କୌଶଳେ ତୁମକୁ ରକ୍ଷା କରିଛି । ସବୁ ଭୁଲି-ଯାଇଛ ପରା !"

ଉତ୍ତରରେ ବ୍ରହ୍ମା କହିଲେ, "ତୁମେ କ'ଣ ନିଜ ଦୁର୍ଯୋଗ କଥା ମନେ ରଖିଛ ? ଥରେ ରାକ୍ଷସଙ୍କ ସହ ଯୁଦ୍ଧ କରୁଥିଲେ । ଜଗନ୍ମାତା ତୁମକୁ ରକ୍ଷା କରି ନ ଥିଲେ ତୁମର ଅବସ୍ଥା କ'ଣ ହୋଇଥାନ୍ତା, ସେ କଥା ପାଶୋରିଦେଇଛ ପରା !"

ଦୁହେଁ ଯୁକ୍ତିତର୍କ କରୁଛନ୍ତି, ସେତିକିବେଳେ ଶିବଙ୍କ କଣ୍ଠସ୍ୱର ଶୁଭିଲା : "ହେ ମୋହଗ୍ରସ୍ତ ବିଷ୍ଣୁ, ହେ ମୋହଗ୍ରସ୍ତ ବ୍ରହ୍ମା, ତୁମେ ଦୁହେଁ ମୋର ଆଦିଅନ୍ତ ନିର୍ଣ୍ଣୟ କରିବାକୁ ଚେଷ୍ଟା କର । ମୁଁ କିଛି ସମୟ ପାଇଁ ଏହି ଶ୍ୱେତ-ଦ୍ୱୀପରେ ବିରାଜ କରୁଛି । ଯିଏ ତା' କାମରେ ସଫଳ ହେବ, ସେ ବଡ଼ ବୋଲି ଜାଣିବା ।

ବିଷ୍ଣୁ ଓ ବ୍ରହ୍ମା ଏ କଥା ମାନିନେଲେ । ଶିବଙ୍କ ସତ୍ତାର ଆଦି ଜାଣିବା ନିମନ୍ତେ ବିଷ୍ଣୁ ପାତାଳପୁରୀ ଯାଇ ଗଲେ । ଶିବଙ୍କ ଅନ୍ତ ଜାଣିବା ନିମନ୍ତେ ବ୍ରହ୍ମା ଆକାଶକୁ ଉଠିଲେ ।

ବିଷ୍ଣୁ ପାତାଳପୁରୀରେ ପହଞ୍ଚି ମଧ୍ୟ ଶିବଙ୍କ ଆଦିର ସନ୍ଧାନ ପାଇଲେ ନାହିଁ । ଶିବଙ୍କ ଆଦି ନିର୍ଣ୍ଣୟ କରିବା କ'ଣ ସତରେ ଅସମ୍ଭବ ? ବିଷ୍ଣୁ ଏଇଆ ଭାବି ଚିନ୍ତିତ ହେଲେ ।

ବ୍ରହ୍ମା ଆକାଶର ବହୁ ଉଚ୍ଚକୁ ଗଲେ । କିନ୍ତୁ ଶିବଙ୍କ ଅନ୍ତ ପାଇଲେ ନାହିଁ । ସେ ବିସ୍ମିତ ଓ କ୍ଳାନ୍ତ ହୋଇ କ'ଣ କରିବେ ଭାବୁଛନ୍ତି, ହଠାତ୍ ଫୁଲଟିଏ ଉପରୁ ଖସିଆସିବାର ଦେଖି ହାତ ବଢ଼ାଇ ତାକୁ ଧରିନେଲେ ଓ ଶ୍ୱେତ-ଦ୍ୱୀପକୁ ଆସି ବିଷ୍ଣୁଙ୍କୁ କହିଲେ, "ଶିବଙ୍କ ଶୀର୍ଷ-ଦେଶରୁ ଏ ଫୁଲ ନେଇଆସିଲି ।"

"ଏହା ସତ ?" ଶିବ ଫୁଲକୁ ପଚାରିଲେ ।

"ହଁ, ସତ !" ଫୁଲ କହିଲା ।

କିନ୍ତୁ ବିଷ୍ଣୁ କହିଲେ, "ଏକଥା ମୋର ବିଶ୍ୱାସ ହେଉନାହିଁ । ସ୍ୱୟଂ ଶିବଙ୍କୁ ପଚାରିଲେ ଯାଇ ମୋର ସନ୍ଦେହ ମୋଚନ ହେବ ।"

ଶିବଙ୍କ ମୂର୍ତ୍ତି ଅଦୃଶ୍ୟ ହେଲାବେଳେ ତାଙ୍କ କଣ୍ଠସ୍ୱର ଶୁଭିଲା । ସେ କହିଲେ, "ଫୁଲ ମିଛ କହୁଛି । ମୋ ଶୀର୍ଷରେ ଦେବତାମାନେ ରଖି-ଥିବା ଫୁଲରୁ ଗୋଟାଏ ଖସିପଡ଼ୁଥିବା ବେଳେ ବ୍ରହ୍ମା ତାକୁ ଧରିନେଇଥିଲେ । ପ୍ରକୃତରେ ସେ ମୋ ଶୀର୍ଷଦେଶ ଦେଖିନାହାଁନ୍ତି ।"

ଶିବ ସେ ଫୁଲଟିକୁ ଶାପ ଦେଲେ କି ତେଣିକି ତା' ଜାତିର ଫୁଲମାନେ ଆଉ ତାଙ୍କ ପୂଜାରେ ଲାଗିପାରିବେ ନାହିଁ ।



ଏ କଥା କହିସାରି ମୁନି ମନ୍ତବ୍ୟ ଦେଲେ, "ବୁଝିଲ, ମାୟାମୋହରେ ବିଷ୍ଣୁ ଓ ବ୍ରହ୍ମା ମଧ୍ୟ ଏହିପରି ଧନ୍ଦା ପଡ଼ିଯା'ନ୍ତି । କେତେ କେତେ ବିଜ୍ଞ ବ୍ୟକ୍ତି ବି ଏଥିରେ କଲବଲ ହୁଅନ୍ତି । ଏଥିରୁ ନିସ୍ତାରର ଏକମାତ୍ର ଉପାୟ ବିଶ୍ୱ-ଜନନୀଙ୍କ କୃପା । ତାଙ୍କୁ ପୂଜା କରିଜାଣିଲେ ସମସ୍ୟାର ସମାଧାନ ହୁଏ ।"

"ମହାତ୍ମା, ଆପଣ ତେବେ ତା'ର ଉପାୟ ବତାଇଦିଅନ୍ତୁ ।" ସୁରଥ ନିବେଦନ କଲେ ।

"ବିଶ୍ୱଜନନୀଙ୍କୁ ଅମ୍ବା ରୂପେ ପୂଜା କରିବା ଶୁଭଙ୍କର । ସେ ସମସ୍ତ ମାଗୁଣି ପୂରଣ କରି-ଥାଆନ୍ତି । ଆଶ୍ୱିନ ତଥା ଚୈତ୍ର ମାସରେ ନବରାତ୍ରି ବ୍ରତ କରାଯାଏ । ମାସ ଆରମ୍ଭରେ ନ' ଦିନ କରି ନାନାବିଧ ନିୟମ ପାଳନ କରିବାକୁ ହୁଏ । ସେତେବେଳେ ପବିତ୍ରଭାବରେ ଚଳିବାକୁ ହୁଏ । ଯଥାର୍ଥ ମନ୍ତ୍ର ପାଠ କରି ଅର୍ଘ୍ୟ ନୈବେଦ୍ୟ ଦେଇ ଦେବୀଙ୍କୁ ପୂଜା କରିବାକୁ ହୁଏ । ବ୍ରତ ଶେଷରେ ଦାନ କରିବାକୁ ହୁଏ । ନିୟମମାନ ପାଳନ କରି ବ୍ରତ ଉଦ୍‌ଯାପନ କରି ପାରିଲେ ଦେବୀ ତୁଷ୍ଟ ହୁଅନ୍ତି ।

"ରାଜା ! ଦେବୀଙ୍କ ପୂଜାଠାରୁ ବଳି ତୁମର ସହାୟତା କରି ଭଳି ଆଉ କିଛି ନାହିଁ । ତୁମେ ତାହାହିଁ କର । ରାଜ୍ୟ ଓ ପରିବାର ଫେରି-ପାଇବ । ହେ ବଣିକବର ! ତୁମେ ବି ତାହାହିଁ କର । ଦୁଃଖରୁ ମୁକ୍ତ ହୋଇପାରିବ ।"

ମୁନିଙ୍କର ଏ ଉପଦେଶ ଶୁଣି ରାଜା ଓ ବଣିକ ତାଙ୍କୁ ପ୍ରଣାମ କଲେ ଓ କହିଲେ, "ମହାତ୍ମା,

ଆପଣ ଆମକୁ ଆଲୋକ ଦେଖାଇଛନ୍ତି । ବର୍ତ୍ତମାନ ଦେବୀ-ଆରାଧନାର ମନ୍ତ୍ର କହିଦିଅନ୍ତୁ ।"

ମୁନି ସେମାନଙ୍କୁ ମନ୍ତ୍ର ଶିକ୍ଷା ଦେଲେ । ମୁନିଙ୍କ ଅନୁମତି କ୍ରମେ ଆଶ୍ରମରୁ ଯାଇ ଦୁହେଁ ଗୋଟିଏ ନଦୀ ତୀରରେ ପହଞ୍ଚିଲେ । ସେଠାରେ ଗୋଟିଏ ନିର୍ଜନ ସ୍ଥାନ ବାଛି ଦୁଇ ବର୍ଷ କାଳ ମନ୍ତ୍ର ଜପ କଲେ ।

ଦୁଇ ବର୍ଷ ପରେ ଥରେ ଲୋହିତ ସାଜ ପରିହିତା ଦେବୀଙ୍କ ଝଲକ ସେମାନେ ଦେଖିଲେ ମାତ୍ର, କିନ୍ତୁ ଦର୍ଶନ ପାଇଲେ ନାହିଁ । ଜଳାହାର ସୁଦ୍ଧା ତ୍ୟାଗ କରି ଦୁହେଁ ଆଉରି ବର୍ଷଟିଏ ତପସ୍ୟା କଲେ । ତଥାପି ଦେବୀଙ୍କ ଦେଖା ନ ମିଳିବାରୁ ସେମାନେ ଅଗ୍ନିକୁଣ୍ଡ ପ୍ରସ୍ତୁତ କରି ପ୍ରାଣ ହାରିବାକୁ ବସିଲେ । ହଠାତ୍ ଦେବୀ ଆବିର୍ଭୂତା ହେଲେ ଓ କହିଲେ, "ତୁମ ଧୈର୍ଯ୍ୟ ଦେଖି ମୁଁ ପ୍ରସନ୍ନା । କ'ଣ ବର ମାଗୁଛ ମାଗ ।"

ସୁରଥ କହିଲେ, "ମାତଃ ! ଶତ୍ରୁ ହାତରେ ମୁଁ ରାଜ୍ୟ ହରାଇଛି । ଯଦି ଦୟା କରି ଦେଖା ଦେଲ, ତେବେ ଏଇ ବର ଦିଅ ଯେମିତିକି ମୋ ରାଜ୍ୟ ମୁଁ ଫେରିପାଇବି ।"

"ବେଶ୍ । ତୁମେ ଶତ୍ରୁକୁ ଅବଲୀଳା କ୍ରମେ ହରାଇବ । ତୁମ ମନ୍ତ୍ରୀ ଅନୁତାପ କରି ତୁମକୁ ଖୋଜି ଆସି ପହଞ୍ଚିବ । ବହୁ କାଳ ସୁଖରେ ତୁମେ ରାଜତ୍ୱ କରିବ ।" ଦେବୀ କହିଲେ ।

ସୁରଥ ରାଜ୍ୟକୁ ଫେରିଗଲେ । ଶତ୍ରୁକୁ ହରାଇ ସେ ରାଜ୍ୟ ଫେରିପାଇଲେ ।

ବଣିକ କିନ୍ତୁ କହିଲା, "ମା, ମୋର ଧନ-ସମ୍ପଦ ଲୋଡ଼ା ନାହିଁ । ମୋତେ ଶାଶ୍ୱତ ସୁଖ ମିଳୁ ।"

ଦେବୀ ତାକୁ ଦିବ୍ୟ ଜ୍ଞାନ ଦେଲେ । ସେ ଦେବୀ-ଭକ୍ତ ସନ୍ନ୍ୟାସୀ ରୂପେ ତୀର୍ଥାଦି ପର୍ଯ୍ୟଟନ କରି ଜୀବନ କଟାଇଲା ଓ ପରେ ଦେବୀଙ୍କ ସାନ୍ନିଧ୍ୟ ଲାଭ କଲା ।





# ଅପରାଧ ନିର୍ଣ୍ଣୟ

କୌଣସି ରାଜ୍ୟରେ ଥାଏ ଜଣେ ଧନୀ ବ୍ୟକ୍ତି । ତା'ର ମୃତ୍ୟୁ ସମୟକୁ ସେ ତା'ର ତିନି ପୁଅଙ୍କୁ ପାଖକୁ ଡାକି କହିଲା, "ଶୁଣ, ମୋର ମୃତ୍ୟୁ ପାଖେଇ ଆସିଲାଣି । ସାରା ଜୀବନ କଷ୍ଟ କରି ଅନେକ ଧନ ଅର୍ଜନ କରିଛି । ସବୁ ମୂଲ୍ୟବାନ୍ ଜିନିଷମାନଙ୍କ ମଧ୍ୟରୁ ସବୁଠାରୁ ମୂଲ୍ୟବାନ୍ ହେଉଛି ତିନୋଟି ହୀରା । ଯେବେ ତୁମେ କେବେ ପରସ୍ପରଠାରୁ ଅଲଗା ହୋଇ ରହିବାକୁ ଚାହିଁବ ତେବେ ପ୍ରତ୍ୟେକ ଗୋଟିଏ ଗୋଟିଏ ହୀରା ବାଣ୍ଟିନେବ । ତିନୋଟିଯାକ ହୀରାର ସମାନ ମୂଲ୍ୟ ।

ପିତାଙ୍କର ମୃତ୍ୟୁପରେ ସେମାନେ ଦେଖିଲେ ସିନ୍ଦୁକରେ ମାତ୍ର ଦୁଇଟି ହୀରା ଅଛି । ତୃତୀୟଟି ଯେ ଭାଇମାନଙ୍କ ମଧ୍ୟରୁ ଜଣେ ନେଇଥିଲା ଏଥିରେ ସନ୍ଦେହ ନ ଥିଲା ।

ବଡ଼ ଭାଇ କହିଲା, "ଆମରି ଭିତରୁ ଜଣେ କିଏ ହୀରାଟି ନେଇଛି । କିନ୍ତୁ ସନ୍ଦେହରୁ ମଧ୍ୟ କାହାକୁ ନିନ୍ଦା କରାଯାଇପାରିବ ନାହିଁ । ସ୍ୱୀକାର କରିବାକୁ ମଧ୍ୟ ସଙ୍କୋଚ ଲାଗିବ । ତେଣୁ ସବୁଠାରୁ ଭଲ ହେବ କାଲି ଭିତରେ ଯିଏ ହୀରାଟି ନେଇଛି ସେଇଟି ଆଣି ରଖିଦେବ । ତେବେ ଅପମାନ ବି ହେବ ନାହିଁ, ଅନ୍ୟାୟ ବି ହେବ ନାହିଁ ।

"ଯଦି ନ ରଖିବ ତ କ'ଣ ହେବ ?" ଦ୍ୱିତୀୟ ଭାଇ ପଚାରିଲା ।

"ତେବେ ଚାଲ ତିନିଜଣ ରାଜାଙ୍କ ପାଖରେ ଫେରାଦ ହେବା । ଅପରାଧ ନିରୂପଣ କରିବାର ଅଧିକାର କେବଳ ରାଜାଙ୍କର ଥାଏ ।" ବଡ଼ ଭାଇ ପ୍ରସ୍ତାବ ଦେଲା ।

"ଇଏ ତ ବହୁତ ଭଲ ପ୍ରସ୍ତାବ ।" ତୃତୀୟ ଭାଇଟି କହିଲା ।

"ଦିନକ ପରେ ଦେଖାଗଲା ହୀରା ମିଳିଲା ନାହିଁ । ତେଣୁ ବାଧ୍ୟ ହୋଇ ତିନି ଭାଇ ରାଜାଙ୍କ ପାଖରେ ପହଞ୍ଚିଲେ ଓ ନିଜ ସମସ୍ୟାର ସମାଧାନ

(ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)



କରିବା ପାଇଁ ନିବେଦନ କଲେ । ରାଜା ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ଆଗରୁ ସେ ସେମାନଙ୍କୁ ଜାଣିଥିଲେ ।

ରାଜା କହିଲେ, "ତୁମମାନଙ୍କ ପିତା ତ ବଡ଼ ଧର୍ମାତ୍ମା ଓ ନ୍ୟାୟପ୍ରିୟ ବ୍ୟକ୍ତି ଥିଲେ । ତୁମମାନଙ୍କର ଏ ସମସ୍ୟା ସମାଧାନ କରିବା ମୋର ନିଶ୍ଚୟ କର୍ତ୍ତବ୍ୟ । ମୁଁ ବୁଝିପାରୁଛି ତୁମେମାନେ ନିହାତି ଅସୁବିଧା ପରିସ୍ଥିତିରେ ପଡ଼ି ମୋ ପାଖକୁ ଆସିଛ । କିନ୍ତୁ କିଛିଦିନ ଅପେକ୍ଷା କରିବାକୁ ହେବ । ଆମର ଜଣେ ସଂପର୍କୀୟା ବୃଦ୍ଧାଙ୍କ ଘରେ ତୁମେ ତିନିଜଣ କିଛିଦିନ ରୁହ । ମୁଁ ତୁମମାନଙ୍କର ସବୁ ବ୍ୟବସ୍ଥା କରିଦେଉଛି ।"

ତା'ପରେ ତିନି ଭାଇ ଯାଇ ସେଇଠି ରହିଲେ । ଇତିମଧ୍ୟରେ ଅନେକ ଦିନ ବିତିଗଲା । ରାଜା ସବୁବେଳେ ସେହିକଥା ଭାବୁଥା'ନ୍ତି; ହେଲେ କୌଣସି ସମାଧାନ ପାଉ ନ ଥା'ନ୍ତି ।

ଦିନେ ରାଜା ସେହି ବୃଦ୍ଧାମହିଳାଙ୍କୁ ଡାକି ପଚାରିଲେ, "ମାଉସୀ ! ସେମାନଙ୍କ ଯୋଗୁ ତୁମର କୌଣସି ଅସୁବିଧା ହେଉ ନାହିଁ ତ ?"

"ନାହିଁ ମହାରାଜ, ସେମାନେ ତ ଖୁବ୍ ସାଧୁ ସ୍ୱଭାବର ।" ବୃଦ୍ଧା କହିଲା ।

"ଠିକ୍ କଥା, ସେଥିପାଇଁ ତ ମୁଁ କିଛି ସମାଧାନ କରିପାରୁନାହିଁ । ସେମାନଙ୍କ ମଧ୍ୟରୁ ଜଣେ ସାହସୀ ଚୋର ଅଛି ।" ରାଜା କହିଲେ ।

ବୃଦ୍ଧା ଆଶ୍ଚର୍ଯ୍ୟ ହୋଇ ସମସ୍ୟାଟି ବିଷୟରେ ପଚାରିଲା । ରାଜା ସମଗ୍ର ଘଟଣାଟି ତା' ଆଗରେ କହିଲେ ।

"ତେବେ ତ ମୁଁ ଚେଷ୍ଟା କରିବି ଚୋର କିଏ ଧରିବାକୁ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ।" ବୃଦ୍ଧା କହିଲା ।

ସେଇଦିନ ରାତିରେ ଯେତେବେଳେ ବୃଦ୍ଧା ଖାଦ୍ୟସବୁ ବାଢ଼ି ଦେଉଥିଲା, ସେତେବେଳେ ଏଇ ତିନି ଭାଇଙ୍କୁ ଗୋଟିଏ ଗଳ୍ପ କହିଲା : ଅନେକ ଦିନ ତଳର କଥା । କୌଣସି ଏକ ରାଜ୍ୟରେ ସିଂହକେତୁ ନାମକ ରାଜା ରାଜତ୍ୱ କରୁଥିଲେ । ତାଙ୍କର ଥିଲା ଗୋଟିଏ ସୁନ୍ଦରୀ କନ୍ୟା । ତା' ନାମ ଥିଲା ଗୁଣବନ୍ତୀ । ସେ ପିଲାଦିନରୁ ବିଦ୍ୟାଶିକ୍ଷା କରୁଥାଏ । ଯେତେବେଳେ ତା'ର ବିବାହ ବୟସ ହୋଇଗଲା, ସେତେବେଳେ ରାଜା ତା'ର ବିଦ୍ୟାଶିକ୍ଷା ବନ୍ଦ କରିଦେଲେ ଓ ବିବାହ ଦେବାପାଇଁ ଉପଯୁକ୍ତ

ପାଣି ଠିକ୍ କଲେ । ବିଦ୍ୟାଶିକ୍ଷା ସମାପ୍ତ ହେବା ପରେ ଦିନେ ଗୁଣବନ୍ତୀ ବହୁତ ଧନରତ୍ନ ବସ୍ତ୍ର ଇତ୍ୟାଦି ନେଇ ଗୁରୁଙ୍କୁ ଦକ୍ଷିଣା ସ୍ୱରୂପ ଦେବାକୁ ଗଲା । କିନ୍ତୁ ଗୁରୁ ସେ ସବୁ ମୂଲ୍ୟବାନ୍ ଜିନିଷ ଗ୍ରହଣ ନ କରି କହିଲେ, "ଯଦି ତୁ ମୋତେ ଦକ୍ଷିଣା ଦେବାକୁ ଚାହୁଁଛୁ ତେବେ ବିବାହ ପରେ ଶ୍ୱଶୁରଘରକୁ ଯିବା ପୂର୍ବରୁ ସବୁ ଅଳଙ୍କାରରେ ସଜ୍ଜିତା ହୋଇ ଏକୁଟିଆ ଥରେ ରାତିରେ ମୋ ଘରକୁ ଆସିବୁ ।" ଗୁଣବନ୍ତୀ ଗୁରୁଙ୍କ କଥାକୁ ଗ୍ରହଣ କରି ଘରକୁ ଫେରିଆସିଲା ।

କିଛିଦିନ ପରେ ଗୁଣବନ୍ତୀର ବିବାହ ହେଲା । ରାତିରେ ସେ ନିଜର ସ୍ୱାମୀଙ୍କୁ ଗୁରୁଦକ୍ଷିଣା କଥା କହିଲା । ଗୁଣବନ୍ତୀର ସ୍ୱାମୀ କହିଲା, "ଠିକ୍ ଅଛି, ତୁମେ ଗୁରୁଙ୍କ ଘରକୁ ଯାଇ ଆସ ।"

ଗୁଣବନ୍ତୀ ନିଜର ସବୁ ଅଳଙ୍କାର ପିନ୍ଧି ଗୁରୁଙ୍କ ଘର ଆଡ଼େ ଚାଲିଲା । ଗଲାବେଳେ ବାଟରେ ଜଣେ ଡକାୟତ ତା'ର ରାସ୍ତା ବନ୍ଦ କରି ଠିଆ ହେଲା ଓ ସବୁ ଅଳଙ୍କାର ଖୋଲି ଦେଇଦେବାକୁ କହିଲା । ନ ଦେଲେ ମାରି-ଦେବାକୁ ଧମକ ଦେଲା । କିନ୍ତୁ ଗୁଣବନ୍ତୀ ଭୟ ନ କରି ଶାନ୍ତ ଭାବରେ ସବୁକଥା ତାକୁ କହିଲା । ତା'ପରେ ଗୁରୁଙ୍କର ଇଚ୍ଛା ପୂର୍ଣ୍ଣ କରି ଫେରିବା ବାଟରେ ସେ ତାକୁ ସବୁ ଅଳଂ-କାର ଦେଇଦେବ ବୋଲି କଥା ଦେଲା । ଡକାୟତ ଗୁଣବନ୍ତୀର କଥା ମାନିନେଲା ।

ତା'ପରେ ଗୁଣବନ୍ତୀ ଗୁରୁଙ୍କ ଘରେ ପହଞ୍ଚି-ଗଲା । ଗୁରୁ ଶିଷ୍ୟାର ସତ୍ୟରକ୍ଷା ବିଷୟ ଶୁଣି ବହୁତ ଖୁସୀ ହୋଇ କହିଲେ, "ଝିଅ, ତୋତେ ମୁଁ ଯେଉଁ ବିଦ୍ୟାଶିକ୍ଷା ଦେଇଛି ତାହା ଆଜି ସାର୍ଥକ ହୋଇଛି । କିଛି ବିପଦ ଆପଦ ପଡ଼ି-





ପାରେ, ସେକଥା ନଥିବ ତୁ ଗୁରୁକଥା ରକ୍ଷା କରିବାକୁ ରାତିରେ ଏକଲା ଚାଲିଆସିଛୁ । ଏହି ସତ୍ୟରକ୍ଷା ହିଁ ମୋ ନିମନ୍ତେ ସର୍ବୋତ୍ତମ ଗୁରୁଦକ୍ଷିଣା । ବର୍ତ୍ତମାନ ତୁ ନବରକୁ ଫେରିଯାଇ ତୋ ସ୍ୱାମୀ ସହିତ ଆନନ୍ଦରେ ସଂସାର କର ।" ଏ କଥା କହି ଗୁରୁ ତାକୁ ଆଶୀର୍ବାଦ କଲେ ।

ଗୁଣବତୀ ଗୁରୁଙ୍କୁ ପ୍ରଣାମ କରି ଫେରିଆସିଲା । ରାସ୍ତାରେ ଅପେକ୍ଷା କରିଥିବା ଡକାୟତକୁ ଦେଖି ସେ କହିଲା, "ଭାଇ, ବର୍ତ୍ତମାନ ମୋର୍ ସମସ୍ତ ଅଳଙ୍କାର ଆପଣ ନେଇଯାଆନ୍ତୁ !"

ଏକଥା ଶୁଣି ଡକାୟତର ହୃଦୟ ଦୟାର୍ଦ୍ର ହୋଇଗଲା । ସେ ଗୁଣବତୀର ପାଦ ପାଖରେ ପଡ଼ି କହିଲା, "ଝିଅ, ମୋତେ କ୍ଷମା କରିଦେ' । ତୋ ପରି ଝିଅଠୁ ଚୋରି କରି ମୁଁ ବଞ୍ଚିପାରିବି ନାହିଁ ।" ଏକଥା କହି ସେ ରାତିର ଘୋର ଅନ୍ଧକାର ଭିତରେ କୁଆଡ଼େ ଅଦୃଶ୍ୟ ହୋଇଗଲା ।

ଗୁଣବତୀ ଫେରିଆସି ସମଗ୍ର ବୃତ୍ତାନ୍ତ ନିଜ ସ୍ୱାମୀକୁ ଶୁଣାଇଲା । ସ୍ୱାମୀ ମଧ୍ୟ ସେସବୁ ଶୁଣି ଖୁବ୍ ଖୁସି ହେଲା । ତା'ପରେ ସେମାନେ ପରସ୍ପର ପ୍ରତି ବିଶ୍ୱାସୀ ହୋଇ ସୁଖରେ କାଳ କଟାଇଲେ ।

ବୃଦ୍ଧାଙ୍କଠାରୁ ଏଇ ଗଳ୍ପଟି ଶୁଣି ତିନିପୁଅଯାକ ଖୁବ୍ ଖୁସି ହେଲେ ।

କିନ୍ତୁ ବୃଦ୍ଧା କହିଲା—"ଶୁଣ ପୁଅମାନେ, ମୋର ସମସ୍ୟା ହେଉଛି ଏହି ଗଳ୍ପରେ କେତେ ଜଣ ଉଦାର ସ୍ୱଭାବର ବ୍ୟକ୍ତି ଅଛନ୍ତି, କିନ୍ତୁ ସବୁଠାରୁ ବେଶୀ ଉଦାର ସ୍ୱଭାବ କାହାର ? ସେଇକଥା ମୁଁ ଚିନ୍ତା କରୁଛି । ତୁମ୍ଭେମାନେ କ'ଣ ମୋର ସନ୍ଦେହ ଦୂର କରିଦେଇ ପାରିବ ନାହିଁ ?"

ବଡ଼ଭାଇ ଭାବି ଭାବି କହିଲା, "ବିବାହ ଦିନ ରାତିରେ ନିଜର ପତ୍ନୀକୁ ଗୁରୁଙ୍କ ପାଖକୁ ପଠାଇଥିବା ସ୍ୱାମୀର ଉଦାରତା ହିଁ ସବୁଠାରୁ ବେଶୀ ।"

"ତା'ଠାରୁ ବଡ଼ ଉଦାରତା ଗୁରୁଜୀଙ୍କର ।"

ଅନ୍ୟ ଜଣେ କହିଲା । ତୃତୀୟ ଭାଇ କହିଲା, "ଏତେ ଅଳଙ୍କାର ସବୁର ପ୍ରଲୋଭନ ଏଡ଼ି ଦେଇଥିବା ଚୋରର ଉଦାରତା ସବୁଠାରୁ ବେଶୀ ।"

ତା'ପରେ ବୃଦ୍ଧା ହସି ହସି କହିଲା, "ଆଚ୍ଛା, ସ୍ୱାମୀର କ୍ରୋଧ, ଗୁରୁଙ୍କ ଦ୍ୱାରା ଅପମାନ ଓ ଡାକୁର ଲୋଭ, ଏସବୁ ଆଶଙ୍କା ପାଇଁ ପ୍ରସ୍ତୁତ ହୋଇ ସବୁ ମୁଣ୍ଡପାତି ସହି ନେବା ଗୁଣବତୀର ଉଦାରତା ମହାନ୍ ହେଲା ନାହିଁ ?"

ତା'ପରେ ବୃଦ୍ଧା ରାଜାଙ୍କ ପାଖରେ ପହଞ୍ଚି କହିଲା, "ମୋ ଘରେ ରହିଥିବା ତିନି ଭାଇଙ୍କ ମଧ୍ୟରେ ସବୁଠାରୁ ଯେଉଁଟି ସାନ ସେହି ଚୋରି କରିଛି । ଆପଣ ଚେଷ୍ଟା କରନ୍ତୁ ପ୍ରକୃତ କଥା ଜାଣିବାକୁ ।" ସେ ଏପରି କହିବାର କାରଣ ରାଜା ପଚାରିଲେ । ସେତେବେଳେ ସେ ସମଗ୍ର ଗଳ୍ପ କହି ବୁଝାଇ ଦେଲା, "ଯଦି ସାନଭାଇ ଧନଲୋଭୀ ନ ହୋଇଥାନ୍ତା ତ ସେ ଚୋରର ଉଦାରତାକୁ ଏତେ ପ୍ରଶଂସା କରନ୍ତା ନାହିଁ ।

ରାଜା ତା' ବୁଦ୍ଧିମତ୍ତାରେ ଖୁସୀ ହୋଇଗଲେ । ପରଦିନ ରାଜା ତିନି ଭାଇଙ୍କୁ ଡକାଇପଠାଇଲେ ଓ କହିଲେ, "ଦୁଇଟି ହୀରାକୁ ବଡ଼ ଦୁଇ ଭାଇ ନେବାଟା ଉଚିତ କଥା ହେବ ।"

ସାନଭାଇ ତା'ର ମୁଣ୍ଡ ନୁଆଁଇଦେଲା ଓ ସେ ବିଷୟରେ କୌଣସି ଉଚ୍ଚବାଚ୍ୟ କଲା ନାହିଁ । ବରଂ ଦେଖାଇଲା ଯେ ରାଜାଙ୍କର ଆଦେଶହିଁ ସେ ମାନିନେଲା ।

ତା'ପରେ ତିନିଭାଇ ଘରକୁ ଫେରିଗଲେ ଓ ସମଗ୍ର ସମ୍ପତ୍ତି ତିନିଭାଗରେ ବାଣ୍ଟି ନେଇଗଲେ । ସେମାନେ ତା'ପରେ କେବେ ମଧ୍ୟ ସେ ଘଟଣା ଉପରେ କୌଣସି ଚର୍ଚ୍ଚା କରିନାହାନ୍ତି କି ଭାବି-ନାହାନ୍ତି ଯେ ହୀରା କିଏ ନେଲା ! ସେମାନେ ତିନିଜଣ ପରସ୍ପର ଖୁବ୍ ଅନ୍ତରଙ୍ଗ ହୋଇ, ନିର୍ମଳ ଭ୍ରାତୃଭାବ ସହିତ ସୁଖରେ ଜୀବନଯାପନ କଲେ ।



## ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

### ପୁରସ୍କୃତ ପରିଚୟୋକ୍ତି ମେ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







- ★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଚାରି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।
- ★ ମାର୍ଚ୍ଚ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
- ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।
- ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲଡିଙ୍ଗସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

### ଜାନୁଆରୀ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ବିସ୍କୁଟ ଦୁନିଆ ସତେ ଗୋଲାକାର ମୋର ଟିକି ପେଣ୍ଡୁ ପରି !"

ଦ୍ୱିତୀୟ ଫଟୋ : "ବୁଝିହେନା କହୁ ମୁଁ ଦୁନିଆ ଖବର ନ ଥିଲେ ଉଦର ଭରି !"

ପୁରସ୍କାର ବିଜୟିନୀ : ରଶ୍ମି ବେନାର୍ଜୀ, ଯାଜପୁର ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

**Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras-600 026 (India). Controlling Editor : NAGI REDDI.**





## 'ଜହ୍ନମାମୁଁ'ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ - ୬୦୦ ୦୨୬







**Statement about ownership of JAHNAMAMU (Oriya)**
**Rule 8 (Form VI), Newspapers (Central) Rules, 1956**

| | | | |
|---|---|---|---|
| 1. | *Place of Publication* | ... | 'CHANDAMAMA BUILDINGS'<br>188, Arcot Road<br>Vadapalani, Madras-600 026 |
| 2. | *Periodicity of Publication* | ... | MONTHLY<br>1st of each calendar month |
| 3. | *Printer's Name* | ... | B. V. REDDI |
| | *Nationality* | ... | INDIAN |
| | *Address* | ... | Prasad Process Pvt Limited<br>188, Arcot Road, Vadapalani<br>Madras-600 026 |
| 4. | *Publisher's Name* | ... | B. VISWANATHA REDDI |
| | *Nationality* | ... | INDIAN |
| | *Address* | ... | Chandamama Publications<br>188, Arcot Road, Vadapalani<br>Madras-600 026 |
| 5. | *Editor's Name* | ... | NAGI REDDI |
| | *Nationality* | ... | INDIAN |
| | *Address* | ... | 'Chandamama Buildings'<br>188, Arcot Road, Vadapalani<br>Madras-600 026 |
| 6. | *Name & Address of individuals who own the paper* | ... | CHANDAMAMA CHILDREN'S TRUST FUND<br>Beneficieries: |

1. B. V. HARISH
2. B. V. NARESH
3. B. V. L. ARATI
4. B. L. NIRUPAMA
5. B. V. SANJAY
6. B. V. SHARATH
7. B. L. SUNANDA
8. B. N. RAJESH
9. B. ARCHANA
10. B. N. V. VISHNU PRASAD
11. B. L. ARADHANA
12. B. NAGI REDDI

All Minors—by Trustee:
M. UTTAMA REDDI, 9/3, V.O.C. Street, Madras-600 024

I, B. Viswanatha Reddi, hereby declare that the particulars given above are true to the best of my knowledge and belief.

*1st March 1980*

**B. VISWANATHA REDDI**
*Signature of the Publisher*



చందమామ அம்புலி மாமா





Chandamama is published in TWELVE INDIAN Languages including English: educating and entertaining millions of readers. Our SINHALA Language edition is now dedicated to delight the children of SRILANKA

**CHANDAMAMA**

*the magazine for children makes the young and old WISE.*




চাঁদমামা CHANDAMAMA चांदोबा

# କୁନି ପିଲେ
# ସ୍ନେହ ଚାହାନ୍ତି, ସ୍ନେହ ପାଇ ବଢ଼ି ଚାଲନ୍ତି

ସ୍ନେହର ଉପହାର

## ପାରଲେ ଗ୍ଲୁକୋ
## ସ୍ୱାଦ ମଧୁର
## ଶକ୍ତିରେ ଭରପୂର

ଦୁଧ, ଗହମ, ଶର୍କ ଓ ଗ୍ଲୁକୋଜର
ଶକ୍ତିଦାୟକ ତତ୍ତ୍ୱରେ ଭରପୂର






ଓ୍ୱାର୍ଲ୍ଡ ସିଲେକ୍‌ସନ
ଆନ୍ତର୍ଜାତିକ ବିଜେତା




ଭାରତର ସବୁଠାରୁ ବେଶୀ ବିକ୍ରି ହେଉଥିବା ବିସ୍କୁ

